ଦ୍ୱିତୀୟ ଭାଗ



# ବିଜ୍ଞାନ ପ୍ରତିଭା

ପାଞ୍ଚଖଣ୍ଡ ପ୍ରତ୍ୟେକର ମୂଲ୍ୟ ଦୁଇଟଙ୍କା

ହାଇସ୍କୁଲ, ଏମ. ଇ. ଓ ଉ. ପ୍ରା. ସ୍କୁଲ ପାଇଁ ଡି.ପି.ଆଇ.ଙ୍କଦ୍ୱାରା
ପ୍ରାଇଜ ଓ ଲାଇବ୍ରେରୀ ବହି ରୂପେ ଅନୁମୋଦିତ
( No. 42287 Dt 28. 12. 78 )

---

# ବିଜ୍ଞାନ-ପ୍ରତିଭା

୨ୟ ଭାଗ

ଶ୍ରୀ ଯମେଶ୍ୱର ତ୍ରିପାଠୀ



ଓଡ଼ିଶା ବୁକ୍ ଷ୍ଟୋର

ଲେଖକ .

**ଯମେଶ୍ୱର ତ୍ରିପାଠୀ**

ତ୍ରିପାଠୀ ଭବନ, ଆଠଗଡ଼

ପ୍ରକାଶକ :

ଗୋବର୍ଦ୍ଧନଚରଣ ପାତ୍ର

**ଓଡ଼ିଶା ବୁକ୍ ଷ୍ଟୋର**

ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ପ୍ରକାଶ :

**ମାଣବସା ଗୁରୁବାର, ୧୯୬୭**

ଦ୍ୱିତୀୟ ମୁଦ୍ରଣ :

ଦୀପାବଳୀ ଅମାବାସ୍ୟା ୧୯୮୦

ମୁଦ୍ରଣ :

**ନନ୍ଦକିଶୋର ପ୍ରେସ**, କଟକ-୨

**ମୂଲ୍ୟ—ଦୁଇ ଟଙ୍କା ମାତ୍ର**

ପିପିନା, ଲିନା ଓ ଶନାମା ହାତରେ........

ସାନ ଦଦେଇ

# ସୂଚୀ



---



---

# ଆର୍ଯ୍ୟଭଟ୍ଟ

ସାଧାରଣତଃ ବିଜ୍ଞାନର ଗବେଷଣା ଓ ଉଦ୍ଭାବନ କଥା ପଢ଼ିଲେ ପ୍ରଥମେ ଆମମାନଙ୍କର ମନ ପାଶ୍ଚାତ୍ୟ ଦେଶ ଆଡ଼କୁ ଫେରି ଯାଇଥାଏ । କିନ୍ତୁ ଭାରତରେ ଯେ ଖ୍ରୀଷ୍ଟପୂର୍ବରୁ ବିଜ୍ଞାନର ଗବେଷଣା ଓ ପର୍ଯ୍ୟାଲୋଚନା ହେଉଥିଲା ତାହା ବୋଧହୁଏ ଅଧିକାଂଶ ଜାଣି ପାରି ନାହାନ୍ତି । ବେଦ ହେଉଛି ଆର୍ଯ୍ୟ-ଭୂମିର ପ୍ରାଚୀନ ଗ୍ରନ୍ଥ । ଏହି ବେଦକୁ ପାଶ୍ଚାତ୍ୟ-ଦେଶର ମନୀଷୀମାନେ ଗବେଷଣା କରି ଜାଣି ପାରିଛନ୍ତି ଯେ ଆଜକାଲି ଯେଉଁ ଅଦ୍ଭୁତପୂର୍ବ ଘଟଣାମାନ ବିଜ୍ଞାନ ଜଗତରେ ସୃଷ୍ଟି ହେଉଛି, ତାହା କୁଆଡ଼େ ଅନେକ ଆଗରୁ ବେଦରେ ଉଲ୍ଲେଖ ଥିଲା । ଋଗ୍‌ବେଦରେ ଜ୍ୟୋତିର୍ବିଜ୍ଞାନ ବିଷୟରେ ଅନେକ ତଥ୍ୟ ଦେଖିବାକୁ ମିଳେ । ସେହି ଋଗ୍‌ବେଦରେ ଲିଖିତ ଅଛି ଯେ ବର୍ଷକ ତିନିଶହ ଷାଠିଏ ଦିନ ଏବଂ ବାର ମାସରେ ଗୋଟିଏ ବର୍ଷ ହୁଏ । ଯଜୁର୍ବେଦ ଏବଂ ଅଥର୍ବବେଦ ମଧ୍ୟ ଅନେକ ରୋଗର ନିଦାନ ବିଷୟ ଉଲ୍ଲେଖ ଥିବାର ଦେଖାଯାଏ । ଏଥିରୁ ଜଣାପଡ଼େ ଭାରତର ବିଭିନ୍ନ କ୍ଷେତ୍ରରେ ବିଜ୍ଞାନ ଅଗ୍ରଗତି କରିଥିଲା । ଖ୍ରୀ : ପୂ : ୩୦୦୦ ବର୍ଷ ତଳେ ଭାରତର ସମ୍ପର୍କ ଅନ୍ୟ ଦେଶମାନଙ୍କ ସହ ଥିଲା ତାହା ମହେଞ୍ଜୋଦାରୋଠାରେ ଖନନ ହୋଇ ଉଦ୍ଧାର ହୋଇଥିବା

ଭଗ୍ନ ସ୍ତୂପମାନଙ୍କରୁ ଯେପରି ମିଳି ପାରୁଛି ସେହିପରି ଇଞ୍ଜିନିୟରଙ୍କ କାରିଗରୀ ବିଦ୍ୟାରେ ଭାରତୀୟମାନେ ସେତେବେଳେ ଯଥେଷ୍ଟ ଜ୍ଞାନ ଅର୍ଜିଥିଲେ ଏହା ନିଃସନ୍ଦେହ ବୋଲି ମନେହୁଏ ।

ଆକାଶରେ ଥିବା ଗ୍ରହପୁଞ୍ଜଙ୍କର ଗତିବିଧି ଏବଂ ସେମାନଙ୍କର ପୃଥିବୀ ଉପରେ ଥିବା ପ୍ରଭାବ ବିଷୟରେ ପ୍ରାଚୀନ ହିନ୍ଦୁ ବୈଜ୍ଞାନିକମାନେ ବହୁ ମୂଲ୍ୟବାନ ଗବେଷଣାମାନ କରି ଯାଇଛନ୍ତି । ଯଦିଓ ବୈଦିକ ଯୁଗର ଅନେକ ଗ୍ରନ୍ଥ ଆଜିକାଲି ଦୁଷ୍ପ୍ରାପ୍ୟ ତଥାପି ଯେଉଁ କେତୋଟି ପ୍ରାଚୀନ ଗ୍ରନ୍ଥ ଆମକୁ ମିଳିପାରିଛି ସେଥିଭିତରେ ଆର୍ଯ୍ୟଭଟ୍ଟଙ୍କଦ୍ୱାରା ପ୍ରଣୀତ "ଆର୍ଯ୍ୟଭଟ୍ଟୀୟମ୍" ହେଉଛି ସର୍ବଶ୍ରେଷ୍ଠ । ଏହା ହେଉଛି ଜ୍ୟୋତିଷ ଶାସ୍ତ୍ର ଉପରେ ସର୍ବପ୍ରାଚୀନ ପ୍ରାମାଣିକ ଗ୍ରନ୍ଥ ।

ଯଦିଓ ଆର୍ଯ୍ୟଭଟ୍ଟଙ୍କ ପୂର୍ବରୁ ଅନେକ ଜ୍ୟୋତିଷ ଥିଲେ; କିନ୍ତୁ ଭାରତୀୟ ଜ୍ୟୋତିଷ ବିଜ୍ଞାନକୁ ଗଭୀର ଭାବରେ ଅଧ୍ୟୟନ ଓ ଅନୁଶୀଳନ କରି ସେ ଏପରି ସୁନ୍ଦର ଏବଂ ସରଳ ଭାବରେ ଜନ ସମାଜ ଆଗରେ ଥୋଇଦେଲେ, ଯାହାଫଳରେ ଏହା ସମସ୍ତଙ୍କର ବୋଧଗମ୍ୟ ହୋଇ-ପାରିଲା । ସମସ୍ତେ ଏହାକୁ ଆଦର କଲେ ।

※ ଆର୍ଯ୍ୟଭଟ୍ଟଙ୍କର ବଂଶ ପରିଚୟ ବିଷୟରେ ସେପରି କୌଣସି ପ୍ରାମାଣିକ ତଥ୍ୟ ମିଳି ନାହିଁ । ସବୁ ପ୍ରାଚୀନ କବିଙ୍କଭଳି ସେ ତାଙ୍କ ଗ୍ରନ୍ଥରେ କୌଣସିଠାରେ ନିଜର ବଂଶଲତା ବିଷୟରେ ଉଲ୍ଲେଖ କରି ନାହାନ୍ତି । କିନ୍ତୁ ଆର୍ଯ୍ୟଭଟ୍ଟୀୟମରୁ ଉଦ୍ଧୃତ ଏହି ଶ୍ଳୋକରୁ ଏତିକିମାତ୍ର ଜଣାପଡ଼େ ଯେ ସେ ପାଟଳୀପୁତ୍ରର କୁସୁମପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଶ୍ଳୋକଟିର ଗୋଟିଏ ପଂକ୍ତି ହେଲି "ଆର୍ଯ୍ୟଭଟ୍ଟ-ସ୍ତ୍ୱିହ ନିଗଦତି କୁସୁମ ପୁରେଭ୍ୟର୍ଚ୍ଚିତଂ ଜ୍ଞାନମ୍" । ଅର୍ଥାତ୍ ଆର୍ଯ୍ୟଭଟ୍ଟ କୁସୁମପୁର ଲୋକମାନଙ୍କ ଦ୍ୱାରା ସମାଦୃତ

ହୋଇ ଜ୍ଞାନ ଚର୍ଚ୍ଚା ଏହି ଗ୍ରନ୍ଥରେ କରୁଛନ୍ତି । କୁସୁମପୁର ସମ୍ଭବତଃ ଆଜକାଲର ପାଟନା ସହର ହୋଇପାରେ । ପଣ୍ଡିତମାନଙ୍କର ଗଣନା ଅନୁଯାୟୀ ସିଦ୍ଧାନ୍ତ କରାଯାଏ ସେ ସମ୍ଭବତଃ ଖ୍ରୀ: ଅ: ୪୭୬ରେ ସେ ଜନ୍ମ-ଗ୍ରହଣ କରିଥିଲେ ।

ଆର୍ଯ୍ୟଭଟ୍ଟଙ୍କର ସର୍ବାପେକ୍ଷା ବିଶେଷତ୍ୱ ହେଲା ତାଙ୍କର ବୁଦ୍ଧି ବାଣୀ ଦୃଷ୍ଟି । ସେତେବେଳେ ଜ୍ୟୋତିଷ ଶାସ୍ତ୍ରର ସଂଖ୍ୟା କିଛି କମ୍ ନ ଥିଲା । ନାନା ମୁନିଙ୍କର ବିଭିନ୍ନ ପରସ୍ପର ବିରୋଧୀ ମତ ହେତୁ ଜ୍ୟୋତିଷ ବିଦ୍ୟା ଏକ ଗୋଲକଧନ୍ଦାରେ ପରିଣତ ହୋଇଥିଲା । ଯେଉଁ ସିଦ୍ଧାନ୍ତ ଭୁଲ ବା ଠିକ୍ ତାହା ସାଧାରଣ ପାଠକ ପକ୍ଷରେ ବୁଝିବା କଠିନ ହେଉଥିଲା । ଆର୍ଯ୍ୟଭଟ୍ଟ ସେହି ସବୁ ସିଦ୍ଧାନ୍ତମାନଙ୍କୁ ଆଲୋଚନା କରି ତହିଁରେ ନିଜର ବିଚାର ମିଶାଇ ଯେଉଁ ସିଦ୍ଧାନ୍ତ ଠିକ୍ କଲେ ତାହାକୁ ନିଜର ଗ୍ରନ୍ଥରେ ସ୍ଥାନ ଦେଲେ ।

ଆର୍ଯ୍ୟଭଟ୍ଟୀୟମ୍ ଗ୍ରନ୍ଥର ବହୁଳ ଆଲୋଚନା ଦକ୍ଷିଣ ଭାରତରେ ଦେଖାଯାଏ । ତାଙ୍କର ରଚନା ଅନୁଯାୟୀ ଜଣା ପଡ଼େ ଯେ ମାତ୍ର ତେଇଶି ବର୍ଷ ବୟସରେ ସେ ଏହି ମହାନ ଗ୍ରନ୍ଥକୁ ରଚନା କରିପାରିଥିଲେ ।

'ଆର୍ଯ୍ୟଭଟ୍ଟୀୟମ୍'' ଆର୍ଯ୍ୟଛନ୍ଦରେ ଶହେ ଏକୋଇଶିଟି ଶ୍ଳୋକର ଏକ ଶ୍ରେଷ୍ଠ ଗ୍ରନ୍ଥ । ଆର୍ଯ୍ୟଭଟ୍ଟ ଏହାକୁ ଚାରି ପାଦ ବା ଭାଗରେ ବିଭକ୍ତ କରିଛନ୍ତି । ଯଥା ଗୀତିକା ପାଦ, ଗଣିତ ପାଦ, କାଳକ୍ରିୟା ପାଦ, ଏବଂ ଗୋଳପାଦ । ଏଥିରେ ସେ ଯୁଗର ଗଣିତ, ରେଖା ଗଣନା, ବୀଜଗଣିତ ଏବଂ ଜ୍ୟୋତିଷ ସମ୍ବନ୍ଧୀୟ ସମସ୍ତ ଜ୍ଞାନକୁ ସୂତ୍ର ରୂପରେ ପ୍ରସ୍ତୁତ କରାଯାଇଛି ।

ଗୀତିକା ପାଦରେ ଅକ୍ଷରରୁ ସଂଖ୍ୟା ଲିଖନ, ରଶ୍ମି ଆଦିରେ ଶଦଗ ତଥା ମଙ୍ଗଳ ଆଦି ଗ୍ରହଙ୍କର ବର୍ଣ୍ଣନା ଅଛି । ପ୍ରାଚୀନ କାଳରେ ସଂଖ୍ୟା ଆଦି ଲେଖାମାନରେ ଦୁଇଟି ପଦ୍ଧତି ଥିଲା । ଗୋଟିଏ ଅକ୍ଷରଦ୍ୱାରା ଏବଂ ଅନ୍ୟଟି ଅଙ୍କଦ୍ୱାରା । ଯଡ଼ଗୁଡ଼ିକରେ ଯେପରି ଆଜିକାଲି ଇଂରାଜୀର ଆଇ (i)ର ଅକ୍ଷର ଏକକୁ, ଭି (v) ପାଞ୍ଚକୁ ତଥା (x) ଏକ୍ସ ଦଶକୁ ପ୍ରକଟ କରୁଛି ସେହିପରି ପ୍ରାଚୀନ ଭାରତରେ ଅ ର ମାନ ଏକ, ଈର ମାନ ୧୦୦ ଉ'ର ମାନ ୧୦୦୦ ଥିଲା ଏହିପରି ପରବର୍ତ୍ତୀ ସ୍ୱରର ମାନ କ୍ରମଶଃ ଶତେ ଗୁଣ ବଢ଼ି ନିମ୍ନଲିଖିତ ମତେ ହେଉଥିଲା—

| ୩ | ୪ | ୫ |
|---|---|---|
| ଋ—୧୦୦ | ଌ ୧୦୦ | ଏ ୧୦୦ |
| ୬ | ୭ | ୮ |
| ଐ ୧୦୦ | ଓ ୧୦୦ | ଔ ୧୦୦ |

'କ'ର ନାମ ଏକ, 'ଖ' ଦୁଇ 'ଗ' ତିନି, 'ଘ' ଚାରି ଏହିପରି 'ମ' ପର୍ଯ୍ୟନ୍ତ ଏହାର ମାନ କ୍ରମଶଃ ବଢ଼ି ଚାଲିଥିଲା—ଏବଂ 'ମ'ର ମାନ ୨୫ ଥିଲା । 'ଯ' ର ୩୦, 'ର' ୪୦ ଓ' 'ହ' ପର୍ଯ୍ୟନ୍ତ ଏହି କ୍ରମରେ ବଢ଼ି ବଢ଼ି ୧୦୦ ହେଉଥିଲା । ବ୍ୟଞ୍ଜନ ସ୍ୱର ମାତ୍ରା ସହିତ ମିଳାଇ ସଙ୍କେତ ପ୍ରକଟ କରାଯାଉଥିଲା । ଯେପରି—

କ + ଇ = କି = ୧୦୦
ଖ + ଇ = ଖି = ୨୦୦

ଗଣିତ ପାଦରେ ଅଙ୍କଦ୍ୱାରା ସଂଖ୍ୟାକୁ ପ୍ରକଟ କରିବାର ବୈଜ୍ଞାନିକ ପଦ୍ଧତି ବର୍ଣ୍ଣନା କରାଯାଇଛି । ଏହା କ୍ରମଶଃ ୧୦ ଗୁଣ ହୋଇ ନୌ ସ୍ଥାନ ପର୍ଯ୍ୟନ୍ତ ଯାଇଛି । ଏହାର ବର୍ଣ୍ଣନା ଏକ, ଦଶ, ଶତ, ସହସ୍ର, ଅଯୁତ, ନିୟୁତ, କୋଟି, ଅର୍ବୁଦ ରୂପରେ କରା ହୋଇଛି । ଦଶ ଗୁଣତ୍ତୋର ଗଣନା

ବୈଜ୍ଞାନିକ କ୍ଷେତ୍ରରେ ଭାରତର ବିଶିଷ୍ଟ ଦାନ । "ଆର୍ଯ୍ୟଭଟୀୟମ୍"ରେ ବର୍ଗମୂଳ-ଘନମୂଳ ବିଧିରେ ଏହାର ସ୍ପଷ୍ଟ ପ୍ରତିପାଦନ ରହିଛି । ଏହି ପାଦରେ ବର୍ଗ, ଘନ, ବର୍ଗମୂଳ, ଘନମୂଳ ବାହାର କରିବାର ବିଧି, ତ୍ରିଭୁଜ ଓ ବୃତ୍ତର କ୍ଷେତ୍ରଫଳ, ବୃତ୍ତର ପରିଧି, ସମକୋଣୀ ତ୍ରିଭୁଜର କ୍ଷେତ୍ରଫଳ ବାହାର କରିବାର ବିଧି ତଥା ତ୍ରୈରାଶିକର ବିଧି ବର୍ଣ୍ଣନା କରାଯାଇଛି । ଶେଷରେ କୁଟ୍ଟାକର ଗଣିତ ବା ଇଣ୍ଡିଟମିନେଟ ଇକ୍ୱେଶନର ବର୍ଣ୍ଣନା କରାଯାଇଛି । ବୀଜଗଣିତ ନିୟମରେ ସର୍ବ ପ୍ରଥମ ପ୍ରତିପାଦନ କରିବା କାରଣରୁ ଆର୍ଯ୍ୟଭଟଙ୍କୁ ବୀଜଗଣିତର ଜନ୍ମଦାତା କୁହାଯାଏ ।

୩—କାଳକ୍ରିୟା ପାଦର ୨୫ ଶ୍ଲୋକରେ କାଳର ବିଭିନ୍ନ ଭାଗ—ବର୍ଷ, ମାସ, ଦିବସ ( ନାଡ଼ୀ ) ବିନାଡ଼ୀର ବର୍ଣ୍ଣନା କରାଯାଇଛି । ନାଡ଼ୀର ଘଣ୍ଟା ୨୪ ମିନିଟ ସହିତ ସମାନ ଓ ଏଥିରେ ୬୦ ବିନାଡ଼ୀ ବା ବିଘଟିକାରେ ବିଭକ୍ତ କରାଯାଇଛି । ଗୋଟିଏ ବିନାଡ଼ୀର ସମୟ ୨୪ ସେକେଣ୍ଡ । ଏହାକୁ ଆର୍ଯ୍ୟଭଟ ଏପରି ଭାବରେ ବୁଝାଇଛନ୍ତି । ଦୀର୍ଘ ଅକ୍ଷରର ଉଚ୍ଚାରଣ କୌଣସି ପୁରୁଷ ମଧ୍ୟମ ଗତିରେ ଯେତେ ସମୟରେ କରିଏ, ସେହି କଳାକୁ ବିନାଡ଼ୀ କୁହନ୍ତି ।

୪—ଗୋଳ ପାଦର ୫୦ ଶ୍ଲୋକରେ ସୂର୍ଯ୍ୟ ଆଦି ଆକାଶୀୟ ଗୋଲ ପିଣ୍ଡର ବର୍ଣ୍ଣନା ଅଛି । ଏଥିରେ କୁହାଯାଇଛି ଚନ୍ଦ୍ର ଓ ଅନ୍ୟ ଗ୍ରହ ସୂର୍ଯ୍ୟରୁ ପ୍ରକାଶିତ ହୁଅନ୍ତି । ସେମାନଙ୍କର ସୂର୍ଯ୍ୟଙ୍କ ସମ୍ମୁଖରେ ରହିବା ଭାଗ ସୂର୍ଯ୍ୟଙ୍କ ଆଲୋକରେ ପ୍ରକାଶିତ ହୁଏ । ଏ ପାଦରେ ପୃଥିବୀର ଗତି, ଚନ୍ଦ୍ର ଏବଂ ସୂର୍ଯ୍ୟଙ୍କର ଗ୍ରହଣର ଗଣନା କରିବାର ବିଧି, ଗ୍ରହଣ କାଳରେ ପୃଥିବୀର ଛାୟାର ଦୈର୍ଘ୍ୟ ସ୍ପର୍ଶ, ମୋକ୍ଷ ଆଦିର ବର୍ଣ୍ଣନା କରାଯାଇଛି ।

ପ୍ରାଚୀନ ଭାରତରେ ଆର୍ଯ୍ୟଭଟ୍ଟଙ୍କର ଏହି ଗ୍ରନ୍ଥ ବିଶେଷ ଲୋକପ୍ରିୟ ଥିଲା । ସଂସ୍କୃତ ଓ ଦ୍ରାବିଡ଼ୀୟ ଭାଷାରେ ଏହା ଉପରେ ବିଭିନ୍ନ ସମୟରେ ଲିଖିତ ହୋଇଥିବା ଟୀକାରୁ ଏହା ଜଣାପଡ଼େ । ଡଭିଡ଼ ପେଙ୍ଗ୍ରି ଏହି ଆର୍ଯ୍ୟଭଟ୍ଟୀୟମ୍‌ର ବାରଜଣ ଟୀକାକାର ଏବଂ ଟୀକା ଥିବା ବିଷୟ ଉଲ୍ଲେଖ କରିଛନ୍ତି । ସେଗୁଡ଼ିକ ଯଥାକ୍ରମେ—ପ୍ରଭାକର ( ୫୨୫ ଖ୍ରୀ: ଅ: ) ଭାସ୍କର ପ୍ରଥମ (୬୨୯ ଖ୍ରୀ: ଅ:) ସୋମେଶ୍ୱର (୧୦୦୦ ଖ୍ରୀ: ଅ:) ଙ୍କର ବାସନାଭାଷ୍ୟ, କେରଳର ସୂର୍ଯ୍ୟଦେବ ଯଜ୍ୱାଙ୍କର ( ୧୧୮୧ ଖ୍ରୀ: ଅ: ) ଭଟ୍ଟପ୍ରକାଶ, ପରମେଶ୍ୱରଙ୍କର (୧୪୦୦—୧୫୦୯) ଭଟ୍ଟ ଦୀପିକା, ନୀଳକଣ୍ଠ ସୋମସୁତ୍ୱା (୧୪୪୩ ଖ୍ରୀ: ଅ:) ଯଲ୍ଲୟ (୧୮୪୨ ଖ୍ରୀ: ଅ:) ରଘୁନାଥଙ୍କର ବ୍ୟାଖ୍ୟା, ତେଲୁଗୁରେ କନ୍ଦଡ଼ରାମଙ୍କର ସୁଧା ତରଙ୍ଗ ଟୀକା, ଭୂତ ବିଷ୍ଣୁଙ୍କର ଦଶ ଗୀତିକାଭାଷ୍ୟ, ଘଟିଗୋପ ଓ ବିରୁପାକ୍ଷ ସୁରିଙ୍କର ଟୀକା । ଏହି ଟୀକା ମଧ୍ୟରୁ ଆଜ ପର୍ଯ୍ୟନ୍ତ କେବଳ ଦୁଇଟି ମାତ୍ର ପ୍ରକାଶିତ ହୋଇଛି ।

ସୁପ୍ରସିଦ୍ଧ ବିଦ୍ୱାନ ଏଚ, କର୍ଣ୍ଣ ପରମେଶ୍ୱରଙ୍କ କୃତ ଭଟ୍ଟ ଦୀପିକା ଟୀକାର ଅନୁସରଣରେ ଆର୍ଯ୍ୟଭଟ୍ଟୀୟମ୍‌ର ଇଂରାଜୀ ଅନୁବାଦ ଆଜଠାରୁ ଗୋଟିଏ ଶତାବ୍ଦୀ ପୂର୍ବେ ୧୮୭୪ ଖ୍ରୀ: ଅ: ରେ ଲଇଡ଼ନ୍‌ରୁ ପ୍ରକାଶିତ କରିଥିଲେ । ଏହାର ପ୍ରଥମ ହିନ୍ଦୀ ଅନୁବାଦ ବିହାରସ୍ଥ ମୁଜାଫର ପୁରରୁ ଶ୍ରୀ ଉଦୟ ନାରାୟଣ ସିଂହ ୧୯୦୬ ଖ୍ରୀ: ଅ:ରେ ପ୍ରକାଶ କଲେ । ନୀଳକଣ୍ଠ ସୋମସୁତ୍ୱଙ୍କ ଲିଖିତ ମହାଭାଷ୍ୟ ନାମକ ସଂସ୍କୃତ ଟୀକା ତ୍ରିବେନ୍ଦ୍ରମ ସଂସ୍କୃତ ସିରିଜରେ ତିନି ଖଣ୍ଡରେ (୧୯୩୦—୫୭) ପ୍ରକାଶିତ ହୋଇଛି । ଇଂରାଜୀ ଭାଷାରେ ଶ୍ରୀ ପ୍ରବୋଧ ଚନ୍ଦ୍ର ସେନଗୁପ୍ତ ୧୯୨୭ ଖ୍ରୀ: ଅ:ରେ କଲିକତା ବିଶ୍ୱବିଦ୍ୟାଳୟରୁ ଓ କ୍ଲାର୍କ ୧୯୩୧ ଖ୍ରୀ: ଅ: ରେ ଚିକାଗୋରୁ ଏହାର ଅନୁବାଦ ପ୍ରକାଶ କରିଥିଲେ ।

ଜ୍ୟୋତିଷ ଗଣନା କ୍ଷେତ୍ରରେ ଆର୍ଯ୍ୟଭଟ୍ଟଙ୍କର ପ୍ରଥମ ମହତ୍ତ୍ୱପୂର୍ଣ୍ଣ ସିଦ୍ଧାନ୍ତ ହେଲା ଭୂ-ଭ୍ରମଣ ବାଦ । ସାଧାରଣ ମନୁଷ୍ୟଙ୍କୁ ସୂର୍ଯ୍ୟ

ପ୍ରତିଦିନ ପୂର୍ବ ଦିଗରୁ ପଶ୍ଚିମ ଦିଗକୁ ଯିବାର ଦେଖାଯାଏ । ଅଧିକାଂଶ ମନୁଷ୍ୟ ସୂର୍ଯ୍ୟ ପୃଥିବୀ ଚାରିପଟରେ ବୁଲୁଛି ବୋଲି ମଧ୍ୟକାଳ ପର୍ଯ୍ୟନ୍ତ ମାନୁଥିଲେ । ଖ୍ରୀଷ୍ଟଧର୍ମ ପାଶ୍ଚାତ୍ୟ ଜଗତରେ ଏ ମତର ପ୍ରବଳ ସମର୍ଥନ କଲା । ଇଟାଲିରେ ବ୍ରୁନୋଙ୍କ ଭଳି ଦାର୍ଶନିକଙ୍କୁ ଏଥି ନିମନ୍ତେ ଜୀବନ୍ତ ପୋଡ଼ି ଦିଆଗଲା । ସେ କହୁଥିଲେ ପୃଥିବୀ ସୂର୍ଯ୍ୟଙ୍କର ଚାରିପାଖରେ ବୁଲୁଛି ଗାଲିଲିଓ ( ୧୫୬୪—୧୬୪୨ )ଙ୍କୁ ବୃଦ୍ଧାବସ୍ଥାରେ ନିଜର ପ୍ରାଣ ରକ୍ଷା ନିମନ୍ତେ ଏ ମିଥ୍ୟା ସିଦ୍ଧାନ୍ତକୁ ସ୍ୱୀକାର କରିବାକୁ ପଡ଼ିଲା ଯେ—ସୂର୍ଯ୍ୟ ପୃଥିବୀ ଚାରି ପାଖରେ ବୁଲୁଛି ।

ପାଶ୍ଚାତ୍ୟ ଜଗତରେ ପୃଥିବୀର ଗତି ସମ୍ବନ୍ଧରେ ପୋଲାଣ୍ଡର ଜ୍ୟୋତିଷ କୋପର୍ନିକସ ( ୧୪୭୩—୧୫୪୩) ଅନୁସନ୍ଧାନ କରିଥିଲେ; କିନ୍ତୁ ତାଙ୍କର ପ୍ରାୟ ଏକ ହଜାର ବର୍ଷ ପୂର୍ବରୁ ଭାରତରେ ଜନ୍ମଗ୍ରହଣ କରିଥିବା ଆର୍ଯ୍ୟଭଟ୍ଟ ନିଜର ନିରୀକ୍ଷଣ ଆଧାର ଉପରେ ପୃଥିବୀର ଘୂର୍ଣ୍ଣନ ବର୍ଣ୍ଣନା କରିଛନ୍ତି । ଗୋଲ ପାଦର ୯° ଶ୍ଳୋକରେ ସେ ନୌକାର ଦୃଷ୍ଟାନ୍ତ ଦେଇ ବୁଝାଇଛନ୍ତି ଯେ—ଯେଉଁପରି ଚାଲୁଥିବା ନୌକାରେ ବସିଥିବା ମଣିଷ ତୀରରେ ଥିବା ସ୍ଥିର ବସ୍ତୁଗୁଡ଼ିକୁ ବିପରୀତ ଦିଗକୁ ଗତି କରିବାର ଲକ୍ଷ୍ୟ କରେ, ସେହିପରି ମଣିଷକୁ ସୂର୍ଯ୍ୟ ପଶ୍ଚିମ ଦିଗକୁ ଗତି କରିବାର ଦେଖାଯାଏ ଓ ପୃଥିବୀ ସ୍ଥିର ମନେ ହୁଏ । କିନ୍ତୁ ପ୍ରକୃତରେ ପୃଥିବୀ ଘୂରୁଛି । ଜର୍ଜ ସାର୍ଟନ ଠିକ୍ ଲେଖିଛନ୍ତି—ଏହା ଆର୍ଯ୍ୟଭଟ୍ଟଙ୍କର ବଡ଼ ସାହସିକ କଳ୍ପନା । ଯାହାକୁ ବରାହ ମିହିର (୫୦୫—୫୮୭ ଖ୍ରୀ: ଅ:) ତଥା ବ୍ରହ୍ମା ଗୁପ୍ତ (୫୯୮—୬୬୫ ଖ୍ରୀ: ଅ: ) ଇତ୍ୟାଦି ପରବର୍ତ୍ତୀ ଜ୍ୟୋତିଷମାନେ ସ୍ୱୀକାର କରି ନାହାନ୍ତି ।

ଆର୍ଯଭଟ୍ଟଙ୍କର ଦ୍ୱିତୀୟ ଦାନ ହେଲା—ଗ୍ରହଣର ବାସ୍ତବିକ୍ କାରଣ ପ୍ରତିପାଦନ । ପୌରାଣିକ କଳ୍ପନା ଅନୁଯାୟୀ ସୂର୍ଯ୍ୟ ଗ୍ରହଣ ଓ ଚନ୍ଦ୍ର ଗ୍ରହଣ

ରାହୁଦ୍ୱାରା ସୂର୍ଯ୍ୟ ଚନ୍ଦ୍ରଙ୍କର ଗ୍ରାସ ହେତୁ ହୁଏ । ପୁରାଣ କଥା ହେଲା— ସମୁଦ୍ର ମନ୍ଥନ ପରେ ମୋହିନୀ ରୂପରେ ଯେତେବେଳେ ବିଷ୍ଣୁ ଦେବତାଙ୍କୁ ଅମୃତ ବିତରଣ କରୁଥିଲେ ଅସୁର ହୋଇ ମଧ୍ୟ ରାହୁ ଓ କେତୁ ଅମୃତ ପାନ ନିମନ୍ତେ ଦେବତାମାନଙ୍କ ଧାଡ଼ିରେ ବସିଗଲେ । ସୂର୍ଯ୍ୟ ଓ ଚନ୍ଦ୍ର ଗୋପନରେ ଏହି ସଙ୍କେତ ବିଷ୍ଣୁଙ୍କୁ ଦେଲେ । ବିଷ୍ଣୁ ସୁଦର୍ଶନ ଚକ୍ରଦ୍ୱାରା ରାହୁର ଶିର ଛେଦନ କଲେ । ପ୍ରତିଶୋଧ ସ୍ୱରୂପ ରାହୁ ସୂର୍ଯ୍ୟ ଓ ଚନ୍ଦ୍ରଙ୍କୁ ଗ୍ରାସ କରେ ।

ଆର୍ଯ୍ୟଭଟ୍ଟ ଏହି ପୌରାଣିକ କଳ୍ପନାକୁ ମାନିନେଇ ନାହାନ୍ତି । ସେ ଲେଖିଛନ୍ତି ସୂର୍ଯ୍ୟ ଗ୍ରହଣରେ ଚନ୍ଦ୍ରମାର ଛାୟା ସୂର୍ଯ୍ୟଙ୍କୁ ଆଚ୍ଛାଦିତ କରିଦିଏ ଓ ଚନ୍ଦ୍ରଗ୍ରହଣରେ ପୃଥିବୀର ଛାୟା ଚନ୍ଦ୍ରଙ୍କୁ ଢାଙ୍କି ଦିଏ । ବ୍ରହ୍ମଗୁପ୍ତ ପ୍ରଭୃତି ପରବର୍ତ୍ତୀ ଜ୍ୟୋତିର୍ବିଜ୍ଞାନୀମାନେ ଆର୍ଯ୍ୟଭଟ୍ଟ ଏଭଳି ତଥ୍ୟ ପରିବେଷଣ କରିଥିବାରୁ ତାଙ୍କୁ ତୀବ୍ର ସମାଲୋଚନା ଅବଶ୍ୟ କରିଛନ୍ତି । କିନ୍ତୁ ଆଲବେରୁଣୀ ଆର୍ଯ୍ୟଭଟ୍ଟଙ୍କର ସିଦ୍ଧାନ୍ତକୁ ନିର୍ଭୁଲ ବୋଲି ସ୍ୱୀକାର କରି ବ୍ରହ୍ମଗୁପ୍ତଙ୍କ ବିରୁଦ୍ଧରେ ଅଭିଯୋଗ କରିଥିଲେ । ସେ ମିଥ୍ୟା ଲୋକପ୍ରିୟତା ହାସଲ କରିବା ପାଇଁ ସତ୍ୟକୁ ହନନ କରିବାକୁ ଚେଷ୍ଟା କରିଛନ୍ତି ବୋଲି ମତ ଦେଇଛନ୍ତି । *

ପ୍ରାଚୀନ ଭାରତର ଜନୈକ ଅଗ୍ରଗଣ୍ୟ ବୈଜ୍ଞାନିକ ରୂପେ ଆର୍ଯ୍ୟଭଟ୍ଟ ଆଜି ପୂଜିତ । ତାଙ୍କୁ ବୀଜ ଗଣିତର ଜନ୍ମଦାତା କୁହାଯାଏ । ସେ ପ୍ରଥମେ ବୀଜ ଗଣିତ ସମ୍ପର୍କରେ ଉପାଦେୟ ତଥ୍ୟ ଓ ସୂତ୍ର ପ୍ରକାଶ କରିଥିଲେ । ତାଙ୍କର ପ୍ରଣୀତ ମୂଳ ଗ୍ରନ୍ଥ ଆର୍ଯ୍ୟଭଟ୍ଟୀୟମ୍ ଅନେକ ଦିନ କାଳ ଲୋକ-ଲୋଚନରୁ ଦୂରରେ ଥିଲା । ବହୁ ବହୁ ବର୍ଷ ଧରି ଗବେଷକମାନେ ଖୋଜି ଖୋଜି ଏହାର ସନ୍ଧାନ ପାଇ ପାରୁ ନ ଥିଲେ । ସୁଖର କଥା, ୧୮୭୪ ଖ୍ରୀ: ଅ:ରେ ଲିଡ଼େନ୍‌ଠାରେ କର୍ନ (Kern ) ନାମକ ଜଣେ ପଣ୍ଡିତ

ଏହାକୁ ପ୍ରକାଶ କଲେ । ବର୍ତ୍ତମାନ ଏହି ଗ୍ରନ୍ଥଟିକୁ ପାଠ କରିପାରିବା ହେତୁ ତାଙ୍କର ମତ ଯେ କେତେ ଅଭ୍ରାନ୍ତ ତାହା ଜାଣି ହେଉଛି ।

ଆର୍ଯ୍ୟଭଟ୍ଟ ଭାରତର ପ୍ରଥମ ବୈଜ୍ଞାନିକ କହିଲେ ଅତ୍ୟୁକ୍ତି ହେବ ନାହିଁ । ତେଣୁ ତାଙ୍କର ସ୍ମୃତି ରକ୍ଷା କରିବା ପାଇଁ ୧୯୭୫ ମସିହା ଏପ୍ରିଲ୍ ଊଣେଇଶି ତାରିଖରେ ଭାରତ ଯେଉଁ ପ୍ରଥମ ଉପଗ୍ରହ ଆକାଶକୁ ପ୍ରେରଣ କଲା ତାକୁ "ଆର୍ଯ୍ୟଭଟ୍ଟ" ନାମରେ ନାମିତ କରାଗଲା ।



---

* ପଣ୍ଡିତ ଭଗବଦତ୍ତ ବେଦାଳଙ୍କାରଙ୍କ ଲିଖିତ ଆର୍ଯ୍ୟଭଟ୍ଟ ପ୍ରବନ୍ଧରୁ ଉଦ୍ଧୃତ ।

# ବରାହ ମିହିର

ଭାରତ ଇତିହାସର ପୃଷ୍ଠା ଲେଉଟାଇଲ ବେଳେ ପ୍ରତ୍ୟେକ ପାଠକର ଦୃଷ୍ଟି "ଗୁପ୍ତବଂଶ ଏବଂ ଭାରତ ଇତିହାସରେ ସୁବର୍ଣ୍ଣ ଯୁଗ" ଠାରେ ଅଟକି ରହିବ । ବୈଦିକ ଯୁଗ ପରେ ଏହି ସମୟରେ ହିଁ ଭାରତ କଳା, ସାହିତ୍ୟ, ବାଣିଜ୍ୟ, ବିଜ୍ଞାନ ପ୍ରତ୍ୟେକ କ୍ଷେତ୍ରରେ ଉନ୍ନତି କରିଥିଲା । ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ଶ୍ରୀଗୁପ୍ତ ନାମକ ଜଣେ ରାଜା ମଗଧରେ ଗୋଟିଏ କ୍ଷୁଦ୍ର ରାଜ୍ୟ ପ୍ରତିଷ୍ଠା କରିଥିଲେ ଏବଂ ତାଙ୍କ ବଂଶକୁ ଗୁପ୍ତ ବଂଶ ନାମରେ ଅଭିହିତ କରିଥିଲେ । ଏହି ବଂଶରେ ତାଙ୍କ ପରେ ଚନ୍ଦ୍ରଗୁପ୍ତ, ସମୁଦ୍ରଗୁପ୍ତ ଏବଂ ବିକ୍ରମାଦିତ୍ୟ ପ୍ରଭୃତି ରାଜାମାନେ ରାଜୁତି କରିଥିଲେ । ପ୍ରଜାପାଳନ ଏବଂ ରାଜ୍ୟରେ ଜନହିତକର କାର୍ଯ୍ୟ ପାଇଁ ଏହି ରାଜାମାନେ ବିଶେଷ ଲୋକପ୍ରିୟ ହୋଇଥିଲେ । ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱ ସମୟରେ ଦେଶର ଯେପରି ଚୋର ଡକାୟତି ପ୍ରଭୃତି ନ ଥିଲା ସେହିପରି ବିକ୍ରମାଦିତ୍ୟଙ୍କ ଶାସନ କାଳରେ ସାହିତ୍ୟ, କଳା, ବାଣିଜ୍ୟ କ୍ଷେତ୍ରରେ ଦେଶ ସର୍ବାଧିକ ଉନ୍ନତି କରିଥିଲା । ସଂସ୍କୃତ ସାହିତ୍ୟର ସମଧିକ ଚର୍ଚ୍ଚା ତାଙ୍କ ରାଜଦରବାରରେ ହେଉଥିଲା । ଗୁପ୍ତ ବଂଶ ପୂର୍ବରୁ କେବଳ ରାମାୟଣ ଓ ମହାଭାରତ

ଲେଖା ହୋଇଥିଲା । କିନ୍ତୁ ଗୁପ୍ତ ଯୁଗରେ ଅଷ୍ଟାଦଶ ପୁରାଣମାନ ଲେଖା ହେଲା । ବିକ୍ରମାଦିତ୍ୟ ତାଙ୍କ ରାଜଦରବାରରେ ଧନ୍ୱନ୍ତରୀ, କ୍ଷପଣକ, ଅମରସିଂହ, ଶଙ୍କୁ, ବେତାଳ ଭଟ୍ଟ, ଘଟ କର୍ପର, କାଳିଦାସ, ବରାହ ମିହିର ଏବଂ ବରରୁଚି ନାମକ ନଅ ଜଣ ବିଶିଷ୍ଟ ପଣ୍ଡିତଙ୍କୁ ସ୍ଥାନ ଦେଇ ବିଭିନ୍ନ ବିଷୟରେ ଶାସ୍ତ୍ର ଚର୍ଚ୍ଚା କରାଉଥିଲେ । ଏହି ନଅ ଜଣ ପଣ୍ଡିତ ସେମାନଙ୍କର ବିଦ୍ୱତ୍ତା ପାଇଁ ଇତିହାସରେ "ନବରତ୍ନ" ନାମରେ ପ୍ରସିଦ୍ଧି ଲାଭ କରିଛନ୍ତି । ସେହି ନବରତ୍ନରୁ ଗୋଟିଏ ରତ୍ନ ହେଉଛନ୍ତି "ବରାହ ମିହିର" । ସେ ଜ୍ୟୋତିଷ ବିଦ୍ୟାରେ ବିଶାରଦ ଥିଲେ । ତାଙ୍କର ଗଣନା ସଦାସର୍ବଦା ଅଭ୍ରାନ୍ତ ଏବଂ ନିର୍ଭୁଲ ହେଉଥିଲା ।

ବରାହମିହିର ମଗଧ ରାଜ୍ୟର ଉଜ୍ଜୟିନୀଠାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଆଦିତ୍ୟ ଦାସ । ସେ ଜାତିରେ ବ୍ରାହ୍ମଣ ଥିଲେ । ତାଙ୍କ ଲିଖିତ ଗ୍ରନ୍ଥ ସବୁ ପର୍ଯ୍ୟାଲୋଚନା କରି ଐତିହାସିକମାନେ ମତ ଦେଉଛନ୍ତି ଯେ ସେ ସମ୍ଭବତଃ ୪୯୯ ଖ୍ରୀ. ଅ.ରେ ଜନ୍ମଗ୍ରହଣ କରିଥିଲେ ଏବଂ ୫୮୭ ଖ୍ରୀ. ଅ. ପର୍ଯ୍ୟନ୍ତ ବଞ୍ଚିଥିଲେ । ତାଙ୍କ ଜନ୍ମ ସମୟରୁ ଉଜ୍ଜୟିନୀ ଭାରତରେ କଳା ଓ ସାହିତ୍ୟ ଚର୍ଚ୍ଚା ପାଇଁ ବିଖ୍ୟାତ ଥିଲା । ବହୁତ ବିଦ୍ୱାନ ପଣ୍ଡିତ ମାନଙ୍କର ବସତି ହେତୁ ଉଜ୍ଜୟିନୀ ଏକ ସାଂସ୍କୃତିକ ପୀଠ ହୋଇଥିଲା ।

ବିକ୍ରମାଦିତ୍ୟଙ୍କ ରାଜସଭାରେ ଜ୍ୟୋତିଷ ଶାସ୍ତ୍ରରେ ଅଗାଧ ପାଣ୍ଡିତ୍ୟ ଅର୍ଜ୍ଜନ କରିଥିବା ବରାହମିହିର ଅନେକଗୁଡ଼ିଏ ଶାସ୍ତ୍ର ରଚନା କରି-ଯାଇଛନ୍ତି । ଜ୍ୟୋତିଷ ଶାସ୍ତ୍ରରେ ସମଧିକ ଜ୍ଞାନ ଅର୍ଜ୍ଜନ କରିବା ନିମନ୍ତେ ତାଙ୍କ ପ୍ରଣୀତ "ପଞ୍ଚ ସିଦ୍ଧାନ୍ତ" ପୁସ୍ତକ ଏବଂ "ବୃହତ୍ ଜାତକ" ଗ୍ରନ୍ଥ ବିଶେଷ ପ୍ରସିଦ୍ଧି ଲାଭ କରିଥିଲା । "ପଞ୍ଚ ସିଦ୍ଧାନ୍ତ" ପୁସ୍ତକ ଏକ ବିବିଦମାନ

ଗ୍ରନ୍ଥ ରୂପେ ବହୁ ଐତିହାସିକ ଏବଂ ଜ୍ୟୋତିର୍ବିଜ୍ଞାନୀମାନଙ୍କ ଦ୍ୱାରା ପରବର୍ତ୍ତୀ କାଳରେ ସମାଲୋଚିତ ହୋଇଛି । "ବୃହଜ୍ଜାତକ" ଗ୍ରନ୍ଥରେ ଜ୍ୟୋତିଷଶାସ୍ତ୍ର ବିଷୟରେ ବହୁ ଜ୍ଞାତବ୍ୟ ବିଷୟମାନ ପରିବେଶିତ ହୋଇଛି ।

ବରାହମିହିରଙ୍କର ତୃତୀୟ ଗ୍ରନ୍ଥ ଯାହାକି ବିଶେଷ ଲୋକପ୍ରିୟ ଏବଂ ବର୍ତ୍ତମାନ ଅକ୍ଷତ ଅବସ୍ଥାରେ ପଢ଼ିବାକୁ ମିଳିପାରୁଛି ତାହା ହେଉଛି "ବୃହତ୍ ସଂହିତା ।" ଏହି ବୃହତ୍ ସଂହିତାରେ କୃଷି ବିଜ୍ଞାନ ସମ୍ବନ୍ଧୀୟ ଅନେକ ଉପାଦେୟ ତଥ୍ୟ ପରିବେଷିତ ହୋଇଛି । କିପରି, କ'ଣ ଏବଂ କେଉଁ ସମୟରେ ଚାଷ କଲେ ଫସଲ ପ୍ରଚୁର ଆମଦାନୀ ହୋଇ ପାରିବ ତାହା ସେ ଏଥିରେ ଲେଖିଛନ୍ତି । ଏହି ବୃହତ୍ ସଂହିତା କିମ୍ବା କୃଷକ ସହାୟ ଗ୍ରନ୍ଥ ଯାହାକି ବରାହମିହିରଙ୍କଦ୍ୱାରା ରଚିତ ସେ ବିଷୟରେ ଗୋଟିଏ କିମ୍ବଦନ୍ତୀ ପ୍ରଚଳିତ ଅଛି । ତାହା କେତେଦୂର ସତ୍ୟ ତାହା ସ୍ଥିରକରି କହି ହେବ ନାହିଁ, କିନ୍ତୁ ସେ ବିଷୟଟି ଏଠାରେ ଉଲ୍ଲେଖ କରିବା ଅପ୍ରାସଙ୍ଗିକ ହେବ ନାହିଁ ।

ବରାହମିହିରଙ୍କର ଜ୍ୟୋତିଷ ଗଣନା ସଦା ସର୍ବଦା ନିର୍ଭୁଲ ଏବଂ ଅଭ୍ରାନ୍ତ ହେତୁ ତାଙ୍କର ପ୍ରତିଭା ସମଗ୍ର ଭାରତବର୍ଷରେ ପ୍ରସରି ଯାଇଥିଲା । ନିଜେ ବରାହମିହିର ମଧ୍ୟ ନିଜ ଗଣନା ଉପରେ ସଦାବେଳେ ଆସ୍ଥା ରଖୁଥିଲେ । ମୁନିମାନଙ୍କର ମଧ୍ୟ ମତିଭ୍ରମ ହୁଏ । ଅତି ବୁଦ୍ଧିମାନ ଛାତ୍ର ମଧ୍ୟ ପରୀକ୍ଷାରେ ଫେଲ୍ ହୁଏ । ଏସବୁ ଯୋଗ କିମ୍ବା ଭାଗ୍ୟର କଥା କହିପାରନ୍ତି । ସେହିପରି ଗୋଟିଏ ଘଟଣା ବରାହ ମିହିରଙ୍କର ଜୀବନରେ ଘଟିଲା । ଘଟଣାଟି ହେଲା—ବରାହମିହିରଙ୍କର ଗୋଟିଏ ପୁତ୍ର ଜନ୍ମହେଲା । ପିତା ଅତ୍ୟନ୍ତ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ନବଜାତ ପୁତ୍ରର କୋଷ୍ଠୀ

ଛଆର କର ଗଣନା କରିବାକୁ ଲାଗିପଡ଼ିଲେ । ନିଜର ଗଣନା ଏପରି ଭୁଲ୍ ହେବ ବୋଲି ସେ କାହିଁ ଅବା ଭାବିବେ । ଜନ୍ମକୋଷ୍ଠି ବିଚାର କରୁକରୁ ପୁତ୍ରର ଶହେ ବର୍ଷ ଆୟୁଷ ସ୍ଥାନରେ ମାତ୍ର ଦଶ ବର୍ଷ ଆୟୁଷ ବୋଲି ସ୍ଥିର କଲେ । ପୁତ୍ରର ଏତେ ଅଳ୍ପ ଆୟୁଷ ଦେଖି ସେ ଦୁଃଖିତ ହେଲେ । ଦଶ ବର୍ଷ ପରେ ପୁତ୍ରର ମୃତ୍ୟୁ ହେଲେ ମନରେ ବର୍ତ୍ତମାନଠାରୁ ଅଧିକ ଦୁଃଖ ହେବ ଭାବି ସେ ଗୋଟିଏ ମଞ୍ଜୁଷାରେ ନବଜାତ ପୁତ୍ରକୁ ଭର୍ତ୍ତି କରି ନଦୀ ସ୍ରୋତରେ ଭସାଇ ଦେଲେ ।

ସେହି ସମୟରେ "ଲୀଳାବତୀ" ଅନ୍ୟ ଗୋଟିଏ ରାଜବଂଶରେ ଜନ୍ମଗ୍ରହଣ କରିଥିଲେ । ପିଲାଦିନରୁ ଲୀଳାବତୀ ଜ୍ୟୋତିଷ ଶାସ୍ତ୍ର ଏବଂ ଗଣିତ ଶାସ୍ତ୍ର ଅଧ୍ୟୟନ କରି ପରବର୍ତ୍ତୀ କାଳରେ ସୁପଣ୍ଡିତା ହୋଇଥିଲେ । ବରାହମିହିର ଭସାଇ ଦେଇଥିବା ମଞ୍ଜୁଷାଟି ଯାଇ ଲୀଳାବତୀ ଜନ୍ମ ହୋଇଥିବା ରାଜ୍ୟରେ ଲାଗିଲା । ଲୀଳାବତୀଙ୍କ ପିତା ମଞ୍ଜୁଷାଟି ପାଇ ଏବଂ ତହିଁରେ ଗୋଟିଏ ରୂପବାନ୍ ଶିଶୁ ଦେଖି ତାକୁ ଆନନ୍ଦରେ ନେଇ ନିଜ ଘରେ ପୁତ୍ର ପରି ପାଳନ କଲେ ଏବଂ ଶିଶୁଟିର ନାମ "ମିହିର" ବୋଲି ନାମିତ କଲେ । ମିହିର ଏବଂ ଲୀଳାବତୀ ପିଲାଦିନୁ ଏକତ୍ର ବିଦ୍ୟାଭ୍ୟାସ କରିବାକୁ ଲାଗିଲେ । ପରେ ପରିଣତ ବୟସରେ ଦୁହେଁ ପରିଣୟ ପାଶରେ ଆବଦ୍ଧ ଥିଲେ ।

ଜ୍ୟୋତିଷୀ ଶାସ୍ତ୍ରରେ ପାରଦର୍ଶିତା ହାସଲ କରିବା ପରେ ସେମାନେ ବିକ୍ରମାଦିତ୍ୟଙ୍କର ସୁନାମ ଶୁଣିପାରି ସେହି ରାଜସଭାରେ ନିଜର ପାଣ୍ଡିତ୍ୟ ପ୍ରଦର୍ଶନ କରିବା ପାଇଁ ଆସି ଉପସ୍ଥିତ ହେଲେ । ପିତା ପୁତ୍ରଙ୍କର ପରିଚୟ ହେଲା । ତାହାପରେ ବରାହ ମିହିର ପୁତ୍ର ମିହିର ଓ ବୋହୂ ଲୀଳାବତୀକୁ ନେଇ ଘରକୁ ଗଲେ । ଦିନକୁ ଦିନ ମିହିରଙ୍କର ଆଦର ତାଙ୍କ ପାଣ୍ଡିତ୍ୟ ହେତୁ ବଢ଼ିବାକୁ ଲାଗିଲା । ଏହା ଦେଖି ବରାହମିହିର ମନେ ମନେ କ୍ଷୁର୍ଣ୍ଣ

ହେଲେ ଏବଂ ପୁତ୍ରର ପାଣ୍ଡିତ୍ୟ ପାଇଁ ବୋହୂ ଲୀଳାବତୀ ହିଁ କାରଣ ବୋଲି ଜାଣି ପାରିଲେ । ତେଣୁ ସେ ପୁତ୍ରକୁ ବୋହୂର ଜିଭ କାଟିଦେବା ପାଇଁ ଆଦେଶ ଦେଲେ । ଲୀଳାବତୀଙ୍କ ଜିଭ କାଟି ଦେଲେ ସେତ କଥା କହି ପାରିବେ ନାହିଁ ତେଣୁ ମିହିରର ପ୍ରାଧାନ୍ୟ ଆପଣା ଛାଏଁ କମିଯିବ ।

ପିତାଙ୍କ ଆଦେଶ ମିହିର ଲୀଳାବତୀଙ୍କୁ ଜଣାଇଦେଲେ । ଲୀଳାବତୀ ସ୍ୱାମୀଙ୍କୁ ପିତୃ ଆଦେଶ ପାଳନ କରିବା ପାଇଁ ଅନୁରୋଧ କରିବା ସଙ୍ଗେ ସଙ୍ଗେ ସେ ଜାଣିଥିବା କାଳ ନିରୂପଣ, କୃଷିତନ୍ତ୍ର, ଜ୍ୟୋତିଷ ଶାସ୍ତ୍ରର ଅନେକ ସାରକଥା ତାଙ୍କଠାରୁ ଟିପି ରଖିବା ପାଇଁ କହିଲେ । ମିହିର ଏବଂ ବରାହମିହିର ଲୀଳାବତୀଙ୍କ ଠାରୁ ଯାହା ସବୁ ଟିପି ରଖିଥିଲେ, ପରବର୍ତ୍ତୀ କାଳରେ ତାହା "ଖନାବଚନ" ରୂପେ ପ୍ରତ୍ୟେକ ଭାଷାରେ ପ୍ରଚଳିତ ହୋଇ ଆସୁଛି । ସେହି କୃଷିତତ୍ତ୍ୱରୁ କେତୋଟି ଉଦାହରଣ ଦିଆଗଲା—

"ଡାକ କହେ ମିହିରର ସ୍ତ୍ରୀ ଶୁଣହେ ପଣ୍ଡିର ପିତା
ଭାଦ୍ରବ ମାସରେ ଜଳ ମଧ୍ୟେ ଯେବେ ଥରଥର ବସୁମାତା
ରାଜ୍ୟ ନାଶ ଯାଏ, ଗୋ-ମଡ଼କ ହୁଏ, ଆବର ବନ୍ୟାପ୍ରବଳ
ମାପୁଣି ଧରଣ ରୂପୁଣି ଫେରାଇ ଧାନ୍ୟ ନପାଇ ଦୁଃଖର"

କମ୍ପ

*ଯେବାର ଗୁହିକା ( କୁଆଡେଥର ସାକ ସମୁଦ୍ର ଙ୍କରେ
ତହିଁରେ ମଙ୍ଗଳ ବୋଲି କହିଛି ଶାସ୍ତ୍ରରେ
ନାନା ଶସ୍ୟେ ପରିପୂର୍ଣ୍ଣ ହୁଅଇ ମେଦିନୀ
ଖନା କହେ ମିହିରଙ୍କୁ ଏହା ଥାଅ ଜାଣି ।

## ଜନ୍ମା

ବଙ୍ଗଳା ଭାଷାରେ—

ଜଲ୍‌ଭରା କୁମୁଡ଼ା ପାତା-
ଲକ୍ଷ୍ମୀ ବଲେନ୍ ଆମି ତଥା ।

( ଅର୍ଥାତ୍ ଜଳ ଉପରେ ଯଦି କଖାରୁ ପତ୍ର ଗହଳ ହୋଇ ମାଡ଼ିଥାଏ ତେବେ ଲକ୍ଷ୍ମୀ ସେଠାରେ ରହନ୍ତି । ଅର୍ଥାତ୍ ବହୁତ କଖାରୁ ଫଳେ )

କେତେକ ପ୍ରାଚୀନ ଗବେଷକଙ୍କର ମତ ଯେ ବରାହ ମିହିରଙ୍କଦ୍ୱାରା ରଚିତ ବୃହତ୍ ସଂହିତା ବା କୃଷକ ସହାୟକ ଗ୍ରନ୍ଥରେ ଯେଉଁ କୃଷି ସମ୍ପର୍କୀୟ ତଥ୍ୟମାନ ଲିଖିତ ଅଛି ତାହା ସେ ତାଙ୍କ ପୁତ୍ରବଧୂ ଲୀଳାବତୀ, ପରବର୍ତ୍ତୀ ଜୀବନରେ ଯିଏ "ଖନା" ନାମରେ ପରିଚିତା ହେଲେ ତାହାଙ୍କ ଠାରୁ ଗ୍ରହଣ କରିଥିଲେ । ଏସବୁର ଅବତାରଣା କରିବାର ମର୍ମ ଏତିକ ଯେ ପ୍ରାଚୀନ ଭାରତରେ କେବଳ ପୁରୁଷ ମାନେ ଜ୍ଞାନୀ ନ ଥିଲେ ନାରୀମାନେ ମଧ୍ୟ ଅସାଧାରଣ ଧୀଶକ୍ତି ଏବଂ ପାଣ୍ଡିତ୍ୟର ଅଧିକାରିଣୀ ହୋଇ ପାରିଥିଲେ ।

ପ୍ରତିଭା କେତେବେଳେ ଲୁଚିରହି ପାରେ ନାହିଁ । ସୂର୍ଯ୍ୟଙ୍କୁ ବାଦଲ ଢାଙ୍କିବା ପରି ଅଳ୍ପ ସମୟ ପାଇଁ ହୁଏତ ପ୍ରତିଭା ବିକଶିତ ହୋଇ ନ ପାରେ କିମ୍ବା ଅବହେଳିତ ହୋଇପାରେ । ସେହିପରି ବରାହମିହିର ଯେଉଁ କୃଷିତତ୍ତ୍ୱ, ବୃଷ୍ଟି ଜ୍ଞାନ, ବୃକ୍ଷ ରୋପଣ, ସାର ଓ ଖତ ଦେବାର ବିଧି, କେଉଁ ଲଗ୍ନରେ କେଉଁ ଦିଗକୁ ଯାତ୍ରା କରିବା ଉଚିତ୍, ଗର୍ଭସ୍ଥ ସନ୍ତାନ ଗଣନା ପ୍ରଭୃତି ବିଷୟ ଲେଖି ଯାଇଛନ୍ତି ସେ ବିଷୟର ପର୍ଯ୍ୟାଲୋଚନା କରିବା ସମୟରେ ଲୀଳାବତୀଙ୍କ ସ୍ମୃତି ଆପେ ଆପେ ମନକୁ ଆସିଯାଉଛି ।

କୃଷି ବିଜ୍ଞାନ ପାଇଁ ସେତେବେଳେ ବରାହମିହିର ବୃହତ୍‌ସଂହିତାରେ ଯାହା ଉଲ୍ଲେଖ କରି ଯାଇଛନ୍ତି ଆଜକାଲିକାର ବିଜ୍ଞାନ ତାକୁ ମଧ୍ୟ ସମର୍ଥନ କରୁଛି । ସେଥିପାଇଁ ଖନାବଚନରୁ ଦୁଇ ତିନୋଟି ଉଦାହରଣ ଦେଉଛି ।

ଖନା, ବୋଲେ ଶୁଣିଯାଅ-
ନଡ଼ିଆ ମୂଳେ ଚିଟା ଦିଅ ।
ଗଛ ହେବ ବହୁତ ମୋଟା-
ଶୀଘ୍ର ଶୀଘ୍ର ଧରେ ଗୋଟା"

ଖନାବୋଲେ ଶୁଣ ଆରେ ମୋର ଚଷାଭାଇ
ନଡ଼ିଆ ଗଛକୁ ମୋଟ କରିବାର ପାଇଁ
ତାହା ମୂଳେ ମାଟି ଭିତରେ ଧାନର ଅଗାଡ଼
ଦେଇ ଦୁଇବର୍ଷ ଯାଏ ରଖିବ ଉହାଡ଼
ତାପରେ ଉପାଡ଼ ଗଛ ଅଗାଡ଼ ସଙ୍ଗରେ
ଲୁଣ ଦେଇ ତାର ମୂଳ ରଖ ଯତନରେ
ଏହିପରି ଦୁଇ ତିନିବାର କରିଦେଲେ
ସେ ଗଛ ସବଳ ମୋଟା ହୁଅଇଟି ଭଲେ
ଅଳ୍ପ ବୟସେ ଗଛ ବହୁ ଫଳ ଫଳେ
ଖନାବାଣୀ କେବେ ମିଛ ନୁହଁଇ ଭୂତଳେ

କିମ୍ବା

"ଗୁବାକେ ଗୋମୟ ବାଂଶେ ମାଟି-
ଅଫଳ ନଡ଼ିଆ ଚେରକୁ କାଟି
ଉଲୁଅ ଖଡ ସାରୁରେ ଛାଇ-
ଦେଇ ଏହି ରୂପେ କୃଷିକର ଆହେ ଭାଇ"

ଗୁଆଗଛ ଯେବେ ରୋପିଥାଅ କାର୍ତ୍ତି
ତାହାମୂଳେ ଗୋବର ଦିଅ ମାଟିକୁ ଆଡ଼େଇ
ଅଳ୍ପଦିନେ ସେହିଗଛ ନିଶ୍ଚୟ ଫଳିବ
ବାଉଁଶ ମୂଳରେ ମାଟି ପିନ୍ଧାଇଣ ଦେବ ।
ନଡ଼ିଆ ଗଛରେ ଯେବେ ଫଳ ନୋହୁଥିବ
ତାହା ଚେର କାଟି ତା ତଳେ ଲୁଣ ମାଟି ଦେବ
ଓଲୁଅ ଗଛମୂଳେ ଗୋବର ଖତକୁ
ସାରୁ ମୂଳେ ଦେଖି ଜୁଡ଼ାଇବ ପାଉଁଶକୁ
ଏମନ୍ତ କଲେ ଫଳିବ ନିଶ୍ଚୟ ଏ ଗଛ
ଖନା ବଚନ କେବେ ନୁହଁଇଟି ମିଛ ।

କମ୍ବା

"ଶୁଣ ଆରେ ଚଷାବେଟା-
ମାଟି ମଧ୍ୟେ ବାଲିପେଟା
ସେଥିରେ ଯେବେ ଲଗାଅ ପୋଟଳ-
ତେବେ ତୋ ଆଶା ହେବ ସଫଳ ।

ବାଲିଆ ମାଟି ଯେବେ ହୋଇଥିବ
ପୋଟଳ ଲଟା ତହିଁରେ ରୋପିବ
କୋଡ଼ମାଟି ଧୂଳିପରି କର
ଦେଖିବ ଫଳ ହେବ ଅସୁମାର
ତହିଁରେ ଚଷା ଆଶାହେବ ପୂର୍ଣ୍ଣ
ମନେ ରଖିଥାଅ ଖନା ବଚନ ।

ବରାହମିହିରଙ୍କ କୃତ ବୃହତ୍ ସଂହିତାରେ କୃଷି ବିଜ୍ଞାନ ଉପରେ ଯେଉଁ ତତ୍ତ୍ୱ ସବୁ ସଂସ୍କୃତ ଭାଷାରେ ଲିଖିତ ହୋଇଛି ତାହା ଏହିପରି ପ୍ରାୟ ପ୍ରତ୍ୟେକ ଆଞ୍ଚଳିକ ଭାଷାରେ ପ୍ରଚଳିତ ଅଛି ।

ବରାହମିହିର ଜ୍ୟୋତିଷ ଗବେଷଣା କ୍ଷେତ୍ରରେ ଗ୍ରୀକ ମାନଙ୍କଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ । ଆର୍ଯ୍ୟଭଟ୍ଟଙ୍କର ପୃଥିବୀ ଘୂର୍ଣ୍ଣନ ସିଦ୍ଧାନ୍ତକୁ ସେ ବିରୋଧକରି ପରବର୍ତ୍ତୀ କାଳରେ ସମାଲୋଚିତ ହୋଇ ଥିଲେ ମଧ୍ୟ ସେ ଯେଉଁ କୃଷି ସହାୟକ ଗ୍ରନ୍ଥ ଲେଖି ଯାଇଛନ୍ତି ସେଥିପାଇଁ ସେ ଚିରକାଳ ପ୍ରାଚୀନ ଭାରତୀୟ ବୈଜ୍ଞାନିକ ରୂପେ ଅମର ହୋଇ ରହିବେ ।



---

❋ ପଣ୍ଡିତ କୁଞ୍ଜବନ ତ୍ରିପାଠୀ ପଦ୍ୟ ବିନୋଦଙ୍କ ଦ୍ୱାରା ସଂକଳିତ "ଖନା ବଚନ" ପୁସ୍ତକ ଦ୍ରଷ୍ଟବ୍ୟ ।

# ଭାସ୍କରାଚାର୍ଯ୍ୟ

ପ୍ରାଚୀନ ଭାରତରେ ଯେଉଁ କେତେଜଣ ବୈଜ୍ଞାନିକ ସେମାନଙ୍କର ପ୍ରତିଭା ଆଲୋକରେ ଭାରତୀୟ ସଂସ୍କୃତିକୁ ଆଲୋକିତ କରି ଦେଇ ଯାଇଛନ୍ତି, ସେମାନଙ୍କ ଭିତରେ ଭାସ୍କରାଚାର୍ଯ୍ୟ ଅନ୍ୟତମ । ଶ୍ରେଷ୍ଠ ଗାଣିତିକ ରୂପେ ସେ ଏବେ ମଧ୍ୟ ପୂଜିତ ହୁଅନ୍ତି । ଦ୍ୱାଦଶ ଶତାବ୍ଦୀରେ ଜନ୍ମଗ୍ରହଣ କରି ଭାସ୍କରାଚାର୍ଯ୍ୟ ବୀଜ ଗଣିତର ସମୃଦ୍ଧି ପାଇଁ ଯେଉଁ ମୌଳିକ ତଥ୍ୟ ସବୁ ସୃଷ୍ଟି କଲେ ସେଥିପାଇଁ ସେ ଚିରସ୍ମରଣୀୟ ହୋଇ ରହିବେ ।

୧୧୧୪ ଖ୍ରୀ: ଅ:ରେ ବିଜ୍ଜଡାବିଡ଼ ନାମକ ସ୍ଥାନରେ ଭାସ୍କରାଚାର୍ଯ୍ୟ ଜନ୍ମଗ୍ରହଣ କରିଥିଲେ । ଏହି ବିଜ୍ଜଡାବିଡ଼ ଗ୍ରାମ ମହାରାଷ୍ଟ୍ର ରାଜ୍ୟର ଶହ୍ୟାଦ୍ରି ପର୍ବତମାଳରେ ଅବସ୍ଥିତ । ତାଙ୍କ ପିତାଙ୍କ ନାମ ମହେଶ୍ୱର ଆଚାର୍ଯ୍ୟ । ସେ ତାଙ୍କର ପୂର୍ବବର୍ତ୍ତୀ ଗଣିତଜ୍ଞ ଆର୍ଯ୍ୟଭଟ୍ଟ, ବରାହମିହିର ପ୍ରଭୃତିଙ୍କର ଗ୍ରନ୍ଥ ସବୁ ପାଠ କରି ଗଣିତ ଶାସ୍ତ୍ରରେ ଅସାଧାରଣ ବ୍ୟୁତ୍ପତ୍ତି ହାସଲ କରିପାରିଥିଲେ । ଭାସ୍କରାଚାର୍ଯ୍ୟଙ୍କର ବାଲ୍ୟଗୁରୁ ରୂପେ ପିତା ମହେଶ୍ୱର ସମସ୍ତ ଦାୟିତ୍ୱ ନେଇଥିଲେ । ପିତାଙ୍କ କଠିନ ଶାସନ ଏବଂ ଉପଯୁକ୍ତ ତତ୍ତ୍ୱାବଧାନ ହେତୁ ପରବର୍ତ୍ତୀ ଜୀବନରେ ଭାସ୍କରାଚାର୍ଯ୍ୟ ଜଣେ ଗଣିତଜ୍ଞ ହିସାବରେ ପ୍ରତିଷ୍ଠିତ ହୋଇ ପାରିଲେ ।

ଭାରତ ଇତିହାସରେ ପଣ୍ଡିତ ଓ ବିଦ୍ୱାନମାନଙ୍କ ପାଇଁ ସୃଷ୍ଟି ହୋଇଥିବା ଅପୂର୍ବ ସୁଯୋଗ "ସୁବର୍ଣ୍ଣ ଯୁଗ"ର ଶେଷ ପାଦରେ ଭାସ୍କରାଚାର୍ଯ୍ୟ ତରୁଣ । ମୋଗଲମାନଙ୍କର ବାରମ୍ବାର ଆକ୍ରମଣ ହେତୁ ଭାରତୀୟ ସାଂସ୍କୃତିକ ଜୀବନ ବିପର୍ଯ୍ୟସ୍ତ ହୋଇ ପଡ଼ିଥିଲେ ମଧ୍ୟ ଭାସ୍କରାଚାର୍ଯ୍ୟ ଗଣିତ ଶାସ୍ତ୍ରରେ ଗବେଷଣା ପାଇଁ ମନୋନିବେଶ କରିଥିଲେ । ତାଙ୍କର ଏକାଗ୍ରତା ଏବଂ ଶାସ୍ତ୍ର ଅଧ୍ୟୟନ ପ୍ରତି ନିରଳସ ସାଧନା ହେତୁ ସେ ୧୧୫୦ ଖ୍ରୀ: ଅ:ରେ "ସିଦ୍ଧାନ୍ତ ଶିରୋମଣି" ନାମକ ଅମୂଲ୍ୟ ଗ୍ରନ୍ଥ ରଚନା କରି ପାରିଥିଲେ ।

"ସିଦ୍ଧାନ୍ତ ଶିରୋମଣି" ଗ୍ରନ୍ଥଟି ଚାରି ଭାଗରେ ବିଭକ୍ତ । ସେଥିରୁ ଗୋଟିଏ ଭାଗର ନାମ ଲୀଳାବତୀ । ଏହି ଭାଗଟିର ନାମ ଲୀଳାବତୀ ହେବାର କାରଣ ସେ ତାଙ୍କର କନ୍ୟାକୁ ଅତ୍ୟନ୍ତ ସ୍ନେହ କରୁଥିଲେ ଏବଂ ପିଲାଦିନୁ ତାକୁ ଗଣିତ ଶାସ୍ତ୍ର ଶିକ୍ଷା ଦେଇ ଦେଇ ତାର ବୁଦ୍ଧିମତ୍ତାରେ ମୁଗ୍ଧ ହୋଇ ସେ ଅନୁମାନ କଲେ ଯେ ଏହି ଝିଅ ତାଙ୍କର ଯଶକୁ ଅକ୍ଷୁଣ୍ଣ କରି ରଖିପାରିବ । ତେଣୁ ସେହି ଝିଅର ସ୍ମୃତି ପାଇଁ ସେହି ଭାଗର ନାମ ଲୀଳାବତୀ ରୂପେ ନାମିତ କଲେ । ପ୍ରକୃତରେ ଲୀଳାବତୀ ପରବର୍ତ୍ତୀ ଜୀବନରେ ଭାରତରେ ଶ୍ରେଷ୍ଠା ଗଣିତଜ୍ଞ ରୂପେ ଖ୍ୟାତି ଅର୍ଜିଲେ । ତାଙ୍କ ପ୍ରଣୀତ ବୀଜ ଗଣିତ ସୂତ୍ର ସବୁ ଏବେ ମଧ୍ୟ ଲୀଳାବତୀ ସୂତ୍ର ନାମରେ ସୁପରିଚିତ । ବହୁ କଠିନ ଓ ଜଟିଳ ଅଙ୍କର ସରଳ ସମାଧାନ ଏହି ସୂତ୍ର ମାଧ୍ୟମରେ ହୋଇ ପାରିଥାଏ ।

ଲୀଳାବତୀ ଭାଗରେ ୨୭୮ଟି ଶ୍ଳୋକ ରହିଛି । ଏହି ଶ୍ଳୋକଗୁଡ଼ିକ ଯୋଗ, ବିୟୋଗ, ଗୁଣନ, ହରଣ, ବର୍ଗ, ବର୍ଗମୂଳ ଇତ୍ୟାଦି ଗାଣିତିକ କ୍ରିୟା ସମ୍ବନ୍ଧରେ ଲିଖିତ ।

ବୈଦିକ ଯୁଗଠାରୁ ଆରମ୍ଭ କରି ଆର୍ଯ୍ୟଭଟ୍ଟ, ବରାହ ମିହିର, ବ୍ରହ୍ମଗୁପ୍ତ ପ୍ରଭୃତିଙ୍କ ପର୍ଯ୍ୟନ୍ତ ବୀଜ ଗଣିତ କ୍ଷେତ୍ରରେ ଯେତିକ ଆଲୋଚନା ଓ ପର୍ଯ୍ୟାଲୋଚନା ହୋଇଥିଲା ତାହା ସହିତ ନିଜେ ଅଧ୍ୟବସାୟ କରି ଯେଉଁସବୁ ନୂତନ ତଥ୍ୟ ସବୁ ସୃଷ୍ଟି କଲେ ସେ ସବୁକୁ ଏକତ୍ର କରି ଏହି "ସିଦ୍ଧାନ୍ତ ଶିରୋମଣି" ଗ୍ରନ୍ଥର ୨ୟ ଭାଗରେ "ବୀଜ ଗଣିତ" ନାମ ଦେଇ ସନ୍ନିବେଶ କଲେ ।

ତୃତୀୟ ଓ ଚତୁର୍ଥ ଭାଗ ନାମ ଯଥାକ୍ରମେ ଗ୍ରହ ଗଣିତାଧ୍ୟାୟ ଓ ଗୋଳାଧ୍ୟାୟ । ଏହି ଦୁଇ ଭାଗରେ ସେ ଗ୍ରହ, ନକ୍ଷତ୍ରମାନଙ୍କର ଗତିବିଧି ଓ ଜ୍ୟୋତିଷ ଶାସ୍ତ୍ର ଉପରେ ଆଲୋଚନା କରିଛନ୍ତି । ସେ ଗ୍ରହ ଗଣିତାଧ୍ୟାୟରେ ଦର୍ଶାଇଛନ୍ତି ଯେ ବର୍ଷକ ୩୬୫ ଦିନ, ୧୫ ଦଣ୍ଡ, ୩୦ କଳା, ୨୨ ବିକଳା, ୩୦ ପର ଓ ମାସକ ୨୯ ଦିନ ୩୧ ଦଣ୍ଡ, ୨୫ କଳା ।

୧୫୮୭ ଖ୍ରୀ: ଅ:ରେ ଲୀଳାବତୀ ଗ୍ରନ୍ଥକୁ ସମ୍ରାଟ ଆକବର ପାର୍ଶି ଭାଷାରେ ଅନୁବାଦ କରାଇଥିଲେ ଏବଂ ଏବେ ଏହା ଇଂରାଜୀ ଭାଷାରେ ମଧ୍ୟ ଭାଷାନ୍ତରିତ ହୋଇପାରିବା ଫଳରେ ସମଗ୍ର ବିଶ୍ୱରେ ପଠନୀୟ ହୋଇ-ପାରିଛି ।

ପ୍ରାଚୀନ ବୈଜ୍ଞାନିକମାନଙ୍କ ଭିତରେ ଆଚାର୍ଯ୍ୟ ଭାସ୍କର ହେଉଛନ୍ତି ଶ୍ରେଷ୍ଠ ଗାଣିତିକ, ଯାହାଙ୍କର କୃତି ଦେଶ ବିଦେଶରେ ପ୍ରସାର ଲାଭ କରିବା ଫଳରେ ଭାରତୀୟ ଗବେଷଣାର ଉଚିତ ମୂଲ୍ୟାଙ୍କନ ହୋଇପାରିଲା ।



# ସତ୍ୟେନ୍ଦ୍ର ନାଥ ବୋଷ

( ୧୮୯୪—୧୯୭୪ )

ପାଞ୍ଚ ଝିଅରେ ଗୋଟିଏ ପୁଅ । ଗେଲବସର ହେବା କଥା । ଏଥିରେ ସନ୍ଦେହ ନାହିଁ । ଏକ ଆଖି ଆଖି ନୁହେଁ କି ଏକ ସାକ୍ଷୀ ସାକ୍ଷୀ ନୁହେଁ । ସେହିଭଳି ଗୋଟିଏ ବୋଲି ପୁଅ । ଯଦି ଯୋଗ୍ୟ ନ ହୋଇ ଅଯୋଗ୍ୟ ହୁଏ ତେବେ ଜୀବନସାରା କେବଳ ଝୁରିବାକୁ ହେବ ସିନା ! ବାପ ସୁରେନ୍ଦ୍ରନାଥ ବୋଷ ସେଥିପାଇଁ ପୁଅର ପାଠପଢ଼ା ପ୍ରତି ବିଶେଷ ଯତ୍ନବାନ୍ । ସ୍ନେହ ଯେତିକି, ଆଦର ଯେତିକି, ଶାସନ ସେତିକି ।

ସତ୍ୟେନ୍ଦ୍ରନାଥ ବୋଷ ୧୮୯୪ ମସିହା ଜାନୁଆରୀ ମାସ ପହିଲ କଲିକତା ସହରରେ ଜନ୍ମଗ୍ରହଣ କରିଥିଲେ । ଭାରତର ଅଧିକାଂଶ ବୈଜ୍ଞାନିକଙ୍କ ଭଳି ସତ୍ୟେନ୍ଦ୍ର ନାଥ ଗରୀବ ଘରେ ଜନ୍ମ ହୋଇ ନ ଥିଲେ । ତାଙ୍କ ପିତା ସୁରେନ୍ଦ୍ର ନାଥ ବୋଷ ସେ ସମୟରେ ଭାରତୀୟ ରେଳ ବିଭାଗର ଜଣେ ଆକାଉଣ୍ଟାଣ୍ଟ୍ ରୂପେ କାର୍ଯ୍ୟ କରୁଥିଲେ । ଗୋଟିଏ ବୋଲି ପୁଅକୁ ପାଠ ପଢ଼ାଇ ଯୋଗ୍ୟ କରିବା ପାଇଁ ତାଙ୍କର ଆର୍ଥିକ ଅସ୍ୱଚ୍ଛଳତା ନ ଥିଲା ।

ଏକମାତ୍ର ଗେହ୍ଲା ପୁଅକୁ ଦୂରରେ ରଖି ପାଠ ପଢ଼ାଇବାକୁ ମାତା ଆମୋଦିନୀ ଦେବୀ ଆଦୌ ଇଚ୍ଛୁକ ନ ଥିଲେ । ତେଣୁ ଘର ପାଖରେ ଥିବା ନିଜ ଇଣ୍ଡିଆନ୍ ସ୍କୁଲରେ ତାଙ୍କର ପ୍ରାଥମିକ ଶିକ୍ଷା ଆରମ୍ଭ କରିଦେଲେ । ସତ୍ୟେନ୍ଦ୍ରନାଥଙ୍କ ତୀକ୍ଷ୍ଣ ବୁଦ୍ଧି ଏବଂ ପାଠ ପଢ଼ିବା ପାଇଁ ଏକାନ୍ତ ଏକାଗ୍ରତା ଶିକ୍ଷକ ଏବଂ ସାଥୀ ଛାତ୍ର ବନ୍ଧୁ ମହଲରେ ତାଙ୍କୁ ପ୍ରଶଂସାଭାଜନ କରାଇ ପାରିଥିଲା ।

ଭୁଲବାଁ ଦୁଇପତ୍ରରୁ ବାସିଲା ଭଳି ସତ୍ୟେନ୍ଦ୍ର ନାଥ ଯେ ଭବିଷ୍ୟତରେ ଜଣେ ଜ୍ଞାନୀ ବ୍ୟକ୍ତି ହେବେ ଏହା ପିଲାଦିନରୁ ଜଣା ପଡ଼ୁଥିଲା । ସେ ଶ୍ରେଣୀରେ ସଦାସର୍ବଦା ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ଗଣିତ ଶାସ୍ତ୍ରରେ ତାଙ୍କର ଅସାଧାରଣ ବ୍ୟୁତ୍ପତ୍ତି ଥିଲା । ପ୍ରାଥମିକ ଶିକ୍ଷା ପରେ କଲିକତାସ୍ଥ ହିନ୍ଦୁ ସ୍କୁଲରେ ସେ ତାଙ୍କର ମାଟ୍ରିକ୍ ପଢ଼ା ଆରମ୍ଭ କଲେ ଏବଂ ୧୯୦୯ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ପ୍ରବେଶିକା ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହେଲେ ।

ଏହାପରେ କଲେଜ ଜୀବନର ଆରମ୍ଭ ହେଲା । ସେ କଲିକତାସ୍ଥିତ ପ୍ରେସିଡେନ୍‌ସି କଲେଜରେ ବିଜ୍ଞାନର ଛାତ୍ର ରୂପେ ନାମ ଲେଖାଇଲେ । ତାଙ୍କୁ ଉପଯୁକ୍ତ ଦିଗ୍‌ଦର୍ଶନ ଦେବା ପାଇଁ ଏହି କଲେଜରେ ସେତେବେଳେ ଅଧ୍ୟାପକ ରୂପେ ସେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ ସାର୍ ଜଗଦୀଶ ଚନ୍ଦ୍ର ବୋଷ ଓ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କୁ ପାଇଥିଲେ । ଜ୍ଞାନ ଲିପ୍ସୁ ଛାତ୍ରଟିଏ ଦେଖିଲେ ସେମାନଙ୍କୁ କୋଟିନିଧି ମିଳିଲା ଭଳି ଲାଗୁଥିଲା । ସେମାନେ ସେହି ପିଲାର ସମସ୍ତ ତତ୍ତ୍ୱ ନେବା ପାଇଁ ସ୍ୱଇଚ୍ଛାରେ ଆଗେଇ ଆସୁଥିଲେ । ଅବଶ୍ୟ ସେହିଭଳି ଛାତ୍ରବତ୍ସଳ ଅଧ୍ୟାପକ ଆଜିକାଲି ଶହେ ଜଣରେ ଜଣେ ଥିଲେ ଥିବେ ।

ଇଣ୍ଟର ମିଡ଼ିଏଟ୍ ପରୀକ୍ଷାରେ କୃତିତ୍ୱ ସହ ଉତ୍ତୀର୍ଣ୍ଣ ହେବା ପରେ ସତ୍ୟେନ୍ଦ୍ର ନାଥ ବି. ଏସ୍‌ସି. କ୍ଲାସ୍‌ରେ ନାମ ଲେଖାଇଲେ । ବି. ଏସ୍. ସି. ପଢ଼ିବା ସମୟରେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ ଡକ୍ଟର ମେଘନାଦ ସାହା ତାଙ୍କର ସହପାଠୀ ଥିଲେ । ଦୁଇ ବନ୍ଧୁଙ୍କ ଭିତରେ ମିଳାମିଶା ଏବଂ ଭାବର ଆଦାନପ୍ରଦାନ ହୋଇ ବନ୍ଧୁତ୍ୱ ଖୁବ୍ ନିବିଡ଼ ହୋଇ ଉଠିଲା । କଲେଜ ପଢ଼ାରେ ନିଜ ନିଜ ଗ୍ରୁପ୍ ଭିତରେ ପ୍ରତିଯୋଗିତାଭାବ ସୃଷ୍ଟି ହେବା ହେତୁ ପରବର୍ତ୍ତୀ ପରୀକ୍ଷାରେ ସେମାନେ ବେଶ୍ ସୁନାମ ଅର୍ଜ୍ଜନ କରି ପାରୁଥିଲେ । କେଉଁ ଥର ମେଘନାଦ ପ୍ରଥମ ହେଲେ କେଉଁ ଥର ସତ୍ୟେନ୍ଦ୍ର ନାଥ ପ୍ରଥମ ହୁଅନ୍ତି । ପାଠ ପଢ଼ାରେ କେହି ଊଣିଶ୍ ବିଶ୍ ନୁହନ୍ତି । ଅବଶ୍ୟ ଫାଇନାଲ ବି. ଏସ୍‌ସି. ପରୀକ୍ଷାରେ ସତ୍ୟେନ୍ଦ୍ର ନାଥ ମେଘନାଦଙ୍କୁ ଟପିଯାଇ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହେଲେ । ମେଘନାଦ ସାହା ପ୍ରଥମ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ଅଧିକାର କରି ପାସ୍‌କଲେ ।

ପାଠ ପଢ଼ାରେ ତ ଝୁଙ୍କ୍ ଲାଗିଛି । କିଏ କାହାକୁ ଟପି ଆଗକୁ ଯିବ । ପୁଣି ଦୁଇ ବନ୍ଧୁ ଏମ୍. ଏସ୍‌ସି. ସେହି କଲେଜରେ ପଢ଼ିବାକୁ ଆରମ୍ଭ କଲେ । ବିଜ୍ଞାନର ଉପାଧ୍ୟୁତର ପାଠ ସହଜ ନୁହେଁ । ସେଥିପାଇଁ ଅନେକ ପୁସ୍ତକ ପଢ଼ିବାକୁ ହୁଏ । ଗବେଷଣାଗାରରେ ଅନେକ ଗବେଷଣା କରିବାକୁ ହୁଏ । ଅକ୍ଲାନ୍ତ ପରିଶ୍ରମ ନ କଲେ ସଫଳତାର ଗୁଣିକାଠି ହାତକୁ ଆସି ପାରିବ ନାହିଁ । ଦୁଇ ବନ୍ଧୁ ହେକ ଶୋଷ ଭୁଲି ପାଠ ପଢ଼ିବାକୁ ଲାଗିଲେ । କେବଳ ଅଧ୍ୟୟନ ହିଁ ଦୁହିଁଙ୍କର ତପସ୍ୟା ହେଲା । ପରାମର୍ଶ ଦେବା ପାଇଁ ପିତୃପ୍ରତିମ ଦୁଇଜଣ ବିଜ୍ଞ ବୈଜ୍ଞାନିକ ।

ସେତେବେଳେ ଫରାସୀ ଓ ଜର୍ମାନୀ ଭାଷାରେ ପ୍ରାୟ ସବୁ ବୈଜ୍ଞାନିକ ପ୍ରବନ୍ଧମାନ ପ୍ରକାଶିତ ହେଉଥିଲା । ଦୁଇ ବନ୍ଧୁ ଉପଲବ୍ଧି କଲେ ଏହି

ଦୁଇଟି ଭାଷା ଜାଣି ନ ପାରିଲେ ବିଜ୍ଞାନର ଅଗ୍ରଗତି ସମ୍ପର୍କରେ ସେମାନ-ଙ୍କର ସମ୍ୟକ୍ ଧାରଣା ହୋଇପାରିବ ନାହିଁ । ତେଣୁ ଦୁଇବନ୍ଧୁ ଫରାସୀ ଓ ଜର୍ମାନ୍ ଭାଷା ଶିଖିବାକୁ ଆରମ୍ଭ କଲେ ଏବଂ ଶେଷରେ ସେଥିରେ ସଫଳତା ହାସଲ କଲେ । ସେତେବେଳେ ଜର୍ମାନ୍ ଓ ଫରାସୀ ଭାଷାରେ ବିଜ୍ଞାନର ନୂତନ ନୂତନ ଗବେଷଣାତ୍ମକ ପ୍ରବନ୍ଧ ସବୁ ପ୍ରକାଶିତ ହୋଇ ପରେ ସେହି ସବୁ ପ୍ରବନ୍ଧ ଇଂରାଜୀ ଭାଷାରେ ଅନୁବାଦିତ ହୋଇ ପ୍ରକାଶିତ ହେଉଥିଲା । ସତ୍ୟେନ୍ଦ୍ର ନାଥ ଓ ମେଘନାଦ ଏହି ଦୁଇଟି ଭାଷା ସେମାନ-ଙ୍କର ଛାତ୍ର ଜୀବନରେ ଶିକ୍ଷା କରି ପାରିଥିବାରୁ ବିଜ୍ଞାନର ଅଗ୍ରଗତି ସମ୍ପର୍କରେ ଶୀଘ୍ର ଖବର ସଂଗ୍ରହ କରି ପାରୁଥିଲେ ।

ସତ୍ୟେନ୍ଦ୍ର ନାଥ ଏମ୍. ଏସ୍. ସି ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହେଲେ । ଏହାପରେ ତାଙ୍କର ବିବାହ ଡକ୍ଟର ଯୋଗେନ୍ଦ୍ର ନାଥଘୋଷଙ୍କ କନ୍ୟା "ଉଷାଦେବୀ"ଙ୍କ ସହ ୧୯୧୪ ମସିହାରେ ସମ୍ପନ୍ନ ହେଲା ।

ପାଠ ପଢ଼ା ସରିଲା । ହାତକୁ ବି ହାତ ହେଲା-ଏଣିକି ରୋଜଗାର କରିବା କଥା । ସତ୍ୟେନ୍ଦ୍ରନାଥ ଏମ୍. ଏସ୍. ସି. ପାଶ୍ କରିବା ବେଳକୁ କଲିକତା ବିଶ୍ୱ ବିଦ୍ୟାଳୟର କୁଳପତି ଥାନ୍ତି ସାର୍-ଆଶୁତୋଷ ମୁଖାର୍ଜି । ବିଜ୍ଞାନର ସର୍ବୋଚ୍ଚ ଭାବେ ଉନ୍ନତି କରିବା ତାଙ୍କର ଲକ୍ଷ୍ୟଥିଲା । ତାଙ୍କରି ପ୍ରଚେଷ୍ଟାରେ କଲିକତା ବିଶ୍ୱବିଦ୍ୟାଳୟରେ "ପାଲିତ ପ୍ରଫେସର" ପଦ ସୃଷ୍ଟି କରାଯାଇଥିଲା । ରସାୟନ ଓ ପଦାର୍ଥ ବିଜ୍ଞାନର ସୃଷ୍ଟି କରାଯାଇ ଥିବା ଦୁଇଟି 'ପାଲିତ୍ ପ୍ରଫେସର' ପଦବୀରେ ସାର୍ ସି. ଭି. ରମଣ ଏବଂ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟ ଅଧିଷ୍ଠିତ ହୋଇଥିଲେ । ୧୯୧୬ ମସିହାରେ

ସାର୍ ଆଶୁତୋଷ ମୁଖାର୍ଜୀଙ୍କ ଅନୁରୋଧ ରକ୍ଷାକରି ସତ୍ୟେନ୍ଦ୍ର ନାଥ ଓ ମେଘନାଦ ସାହା ଦୁଇ ବନ୍ଧୁ ୟୁନିଭରସିଟି ବିଶ୍ୱବିଦ୍ୟାଳୟ ଅଧୀନରେ ପଦାର୍ଥ ବିଭାଗରେ ଅଧ୍ୟାପକ ରୂପେ ଯୋଗ ଦେଲେ ।

ସେମାନେ ଅଧ୍ୟାପନା ଜୀବନ ଆରମ୍ଭ କରିବା ସମୟରେ ଆଇନଷ୍ଟାଇନଙ୍କର ଆପେକ୍ଷିକ ତତ୍ତ୍ୱ ଓ ପ୍ଲାଙ୍କଙ୍କ କ୍ୱାଣ୍ଟମ ତତ୍ତ୍ୱ ସମଗ୍ର ଜଗତରେ ଆଲୋଡ଼ନ ସୃଷ୍ଟି କରିଥାଏ । ଏହି ଦୁଇଟି ତତ୍ତ୍ୱ ସମ୍ପର୍କୀୟ ଗବେଷଣା ପ୍ରବନ୍ଧମାନ ଜର୍ମାନୀ ଭାଷାରେ ଲିଖିତ ହୋଇ ପ୍ରକାଶିତ ହୋଇଥାଏ । ଛାତ୍ରାବସ୍ଥାରେ ଶିଖିଥିବା ଜର୍ମାନୀ ଭାଷା ଦୁଇ ବନ୍ଧୁଙ୍କୁ ସେତେବେଳେ ବିଶେଷ ସାହାଯ୍ୟ କଲା । ସତ୍ୟେନ୍ଦ୍ର ନାଥ ଓ ମେଘନାଦ ଦୁହେଁ ମିଶି ଜର୍ମାନୀ ଭାଷାରେ ଲିଖିତ ଏସବୁ ସନ୍ଦର୍ଭମାନ ଗଭୀର ମନୋନିବେଶ ସହକାରେ ଅଧ୍ୟୟନ କରି ତାହାକୁ ଇଂରାଜୀ ଭାଷାରେ ଅନୁବାଦ କଲେ । ଇଂରାଜୀ ଭାଷାରେ ରୂପାନ୍ତରିତ ପ୍ରବନ୍ଧଗୁଡ଼ିକୁ ଏକତ୍ର କରି ପୁସ୍ତକ ଆକାରରେ ପ୍ରକାଶ କରିବା ପାଇଁ ଆଇନଷ୍ଟାଇନଙ୍କ ଅନୁମତି ଭିକ୍ଷା କରିଥିଲେ । ଆଇନଷ୍ଟାଇନ୍ ଅନୁମତି ଦେବା ପରେ ପ୍ରବନ୍ଧଗୁଡ଼ିକ ପୁସ୍ତକାକାରରେ ପ୍ରକାଶିତ ହେବା ଫଳରେ ଜ୍ଞାନପିପାସୁ ବହୁ ଭାରତୀୟ ଛାତ୍ରଙ୍କୁ ବିଜ୍ଞାନର ଗବେଷଣା ପାଇଁ ଅନେକ ସାହାଯ୍ୟ କଲା ।

କଥାରେ କହନ୍ତି ବାପ ଗୁଣେ ପୁଅ । ଯେମିତି ଗୁରୁ ସେମିତି ଶିଷ୍ୟ । ସତ୍ୟେନ୍ଦ୍ର ନାଥଙ୍କର କଲେଜ ଛାତ୍ର ଜୀବନରେ ଯେଉଁ ଦୁଇ ମହାମାନ୍ୟ ବୈଜ୍ଞାନିକ ସାର୍ ଜଗଦୀଶ ଚନ୍ଦ୍ର ବୋଷ ଏବଂ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କ ସମ୍ପର୍କରେ ଆସିଥିଲେ ତାହା ତାଙ୍କର ପରବର୍ତ୍ତୀ ଶିକ୍ଷକ ଜୀବନକୁ ମହତର କରି ତୋଳିଥିଲା । ସତ୍ୟେନ୍ଦ୍ର ନାଥ ଛାତ୍ରମାନଙ୍କୁ ଅତ୍ୟନ୍ତ ଭଲ ପାଉଥିଲେ । ଦୁର୍ବୋଧ ଜଟିଳ ଗଣିତର ସମାଧାନ କରିବା ପାଇଁ ସେ ଛାତ୍ରମାନଙ୍କ ପାଇଁ ସମୟ ଅସମୟରେ ପ୍ରାତେଶ ସୃଷ୍ଟି କରି ନ ଥିଲେ ।

ପ୍ରତ୍ୟେକ ଛାତ୍ର ପାଇଁ ତାଙ୍କ ବାସଗୃହର ଦ୍ୱାର ଉନ୍ମୁକ୍ତ ଥିଲା । ଗୁରୁଶିଷ୍ୟ ମଧ୍ୟରେ ସେ ଆଦୌ ପାର୍ଥକ୍ୟ ରଖି ନ ଥିଲେ । ଫଳରେ ସମଗ୍ର ବିଶ୍ୱ-ବିଦ୍ୟାଳୟରେ ଛାତ୍ରମାନଙ୍କ ଭିତରେ ତାଙ୍କର ଲୋକପ୍ରିୟତା ଯଥେଷ୍ଟ ବଢ଼ି ଯାଇଥିଲା । ପ୍ରତ୍ୟେକ ଛାତ୍ର ତାଙ୍କୁ ଯେତିକି ଭକ୍ତି କରୁଥିଲେ ସତ୍ୟେନ୍ଦ୍ର ନାଥ ବୋଷ ସେମାନଙ୍କୁ ସେତିକି ଅଧିକ ସ୍ନେହ କରୁଥିଲେ ।

ବିଜ୍ଞାନ ଭଳି ଏକ ନୀରସ ଶୁଷ୍କ ବିଷୟରେ ସେ ଅଧ୍ୟାପକ ହେଲେ ସୁଦ୍ଧା ତାଙ୍କର ହୃଦୟ ରସଶୂନ୍ୟ ନ ଥିଲା । ଅବସର ସମୟରେ ସେ ସାହିତ୍ୟ ଚର୍ଚ୍ଚା କରିବାକୁ ଏବଂ ଏସ୍‌ରାଜ ବଜାଇବାକୁ ଖୁବ ଭଲ ପାଉଥିଲେ ।

କଲିକତା ବିଶ୍ୱବିଦ୍ୟାଳୟରେ ସେ ଅଧ୍ୟାପକ ରୂପେ କାର୍ଯ୍ୟ କରୁଥିବା ସମୟରେ ଢାକା ବିଶ୍ୱବିଦ୍ୟାଳୟରୁ ପଦାର୍ଥ ବିଜ୍ଞାନରେ ରିଡର (ପ୍ରାଧ୍ୟାପକ) ଭାବରେ ଯୋଗଦେବା ପାଇଁ ତାଙ୍କ ନିକଟକୁ ଆହ୍ୱାନ ଆସିଲା । ସେ ଆହ୍ୱାନକୁ ଉପେକ୍ଷା ନ କରି ଗ୍ରହଣ କଲେ ଏବଂ ଢାକ୍‌କା ବିଶ୍ୱବିଦ୍ୟାଳୟରେ ପ୍ରାଧ୍ୟାପକ ରୂପେ ଯୋଗ ଦେଲେ । ଏଠାରେ ସେ ବୈଜ୍ଞାନିକ ଗବେଷଣାରେ ମନୋନିବେଶ କଲେ । ସେ ପ୍ଲାଙ୍କ୍‌ଙ୍କ ତତ୍ତ୍ୱ ଅନୁସରଣ କରି ଏବଂ ମ୍ୟାକ୍ସ ୱେଲ୍‌-ବୋଲଜ୍‌ମ୍ୟାନଙ୍କର ପରିସଂଖ୍ୟାନ ତତ୍ତ୍ୱକୁ ନିରୀକ୍ଷା କରି ଏକ ନୂତନ ପରିସଂଖ୍ୟାନ ତତ୍ତ୍ୱ ବାହାର କଲେ ଏବଂ ତାଙ୍କର ଏହି ତତ୍ତ୍ୱ ସଂପର୍କୀୟ ପ୍ରବନ୍ଧକୁ "ବ୍ରିଟିଶ ଜର୍ଣ୍ଣାଲ ଅଫ୍ ଫିଜିକ୍‌ସ" ନାମକ ବିଜ୍ଞାନ ପତ୍ରିକାରେ ପ୍ରକାଶନ ପାଇଁ ପଠାଇ ଦେଲେ । ପରେ ପୃଥିବୀ ବିଖ୍ୟାତ ଆଇନ୍‌ଷ୍ଟାଇନ୍ ଏହି ପ୍ରବନ୍ଧଟି ପଢ଼ି ଏତେ ମୁଗ୍ଧ ହୋଇ ଯାଇଥିଲେ ଯେ ସଙ୍ଗେ ସଙ୍ଗେ ନିଜେ ଜର୍ମାନୀ ଭାଷାରେ ଏହାକୁ ଭାଷାନ୍ତରିତ କରି "ଜର୍ମାନ ଜର୍ଣ୍ଣାଲ ଅଫ୍ ଫିଜିକ୍‌ସ" ନାମକ ବିଜ୍ଞାନ ପତ୍ରିକାରେ ତାହା ଉପରେ ଏକ ସୁଚିନ୍ତିତ ମନ୍ତବ୍ୟ

ଲେଖି ପ୍ରକାଶ କଲେ । ଫଳରେ ସୁରେନ୍ଦ୍ର ନାଥ ବୋଷଙ୍କ ପ୍ରତି ସମଗ୍ର ବିଶ୍ୱର ବୈଜ୍ଞାନିକମାନଙ୍କର ଦୃଷ୍ଟି ଆକର୍ଷିତ ହେବାକୁ ଲଗିଲା ।

ସଦା ସର୍ବଦା ଜ୍ଞାନଲିପ୍ସୁ ସତ୍ୟେନ୍ଦ୍ର ନାଥ ଉଚ୍ଚ ଶିକ୍ଷା ତଥା ବିଜ୍ଞାନ କ୍ଷେତ୍ରରେ ଅଧିକ ଗବେଷଣା ପାଇଁ ବିଦେଶ ଯାତ୍ରା ନିମନ୍ତେ ମନ ବଳାଇଲେ । ସେ ନୋବେଲ ପୁରସ୍କାର ବିଜେତା ପୃଥିବୀ ବିଖ୍ୟାତ ବୈଜ୍ଞାନିକ ମ୍ୟାଡ଼ାମ୍ କ୍ୟୁରୀଙ୍କ ଅଧୀନରେ ପଦାର୍ଥ ବିଜ୍ଞାନରେ ଗବେଷଣା ପାଇଁ ସ୍ଥିର କଲେ । ତେଣୁ ୧୯୨୪ ମସିହାରେ ତାଙ୍କୁ ଢାକା ବିଶ୍ୱ-ବିଦ୍ୟାଳୟ ଛୁଡ଼ି ଫ୍ରାନ୍ସ ଯିବାକୁ ହେଲା ।

ଆଇନ୍‌ଷ୍ଟାଇନଙ୍କ ଦ୍ୱାରା ଅନୁବାଦିତ ହୋଇ ପରିସଂଖ୍ୟାନ ବିଷୟକ ତାଙ୍କର ପ୍ରବନ୍ଧଟି ଜର୍ମାନୀ ଭାଷାରେ ପ୍ରକାଶିତ ହେବା ପରେ ପ୍ରାୟ ଊଣା ଅଧିକେ ସମସ୍ତେ ବୈଜ୍ଞାନିକମାନେ ତାଙ୍କ ବିଷୟରେ ସମ୍ୟକ୍ ଧାରଣା ପାଇ ସାରିଥିଲେ । ମ୍ୟାଡ଼ାମ୍ କ୍ୟୁରୀ ସତ୍ୟେନ୍ଦ୍ର ନାଥଙ୍କୁ ଦେଖି ଅତ୍ୟନ୍ତ ଖୁସି ହେଲେ ଏବଂ ଫ୍ରାନ୍ସ ଆସିବା ପୂର୍ବରୁ ଫରାସୀ ଭାଷାରେ ତାଙ୍କର ଯଥେଷ୍ଟ ଜ୍ଞାନ ଥିବାର ଜାଣି ଆହୁରି ମୁଗ୍ଧ ହେଲେ । ଛାତ୍ରାବସ୍ଥାରେ ଫରାସୀ ଭାଷା ଅଧ୍ୟୟନ କରିଥିବାରୁ ଏଠାରେ ତାଙ୍କୁ ଚଳିବାକୁ ଏବଂ ଗବେଷଣା କରିବାକୁ ବିଶେଷ କଷ୍ଟ ହେଲା ନାହିଁ । ମ୍ୟାଡ଼ାମ୍ କ୍ୟୁରୀଙ୍କ ଅଧୀନରେ ସେ ରଞ୍ଜନରଶ୍ମି ଆଧାରିତ ଅଭିଜ୍ଞତାମୂଳକ ସମ୍ପର୍କରେ ଗବେଷଣା ଆରମ୍ଭ କଲେ ।

ଫ୍ରାନ୍ସରେ ମ୍ୟାଡ଼ାମ୍ କ୍ୟୁରୀଙ୍କ ଅଧୀନରେ ଗବେଷଣା କରୁଥିଲେ ମଧ୍ୟ ସେ ଆଇନ୍‌ଷ୍ଟାଇନ୍‌ଙ୍କ ସମ୍ପର୍କ ରଖିବାକୁ ଆଦୌ ଭୁଲି ନ ଥିଲେ । ଫ୍ରାନ୍ସରେ ତାଙ୍କର ଗବେଷଣା ସମ୍ପୂର୍ଣ୍ଣ ହେବା ସମୟରେ ସେ ଆଇନ୍‌ଷ୍ଟାଇନ୍‌ଙ୍କଠାରୁ ଜର୍ମାନୀ ବୁଲି ଆସିବା ପାଇଁ ନିର୍ଦ୍ଦେଶ ପାଇଲେ ।

ଆଇନ୍‌ଷ୍ଟାଇନ୍‌ଙ୍କ ନିର୍ଦ୍ଦେଶକୁ ଗ୍ରହଣ ନ କରି ଆଉ କିଛିଦିନ ସେ ଫ୍ରାନ୍‌ସରେ ରହିପାରିଥିଲେ ତାଙ୍କର ଗବେଷଣା ସମ୍ପୂର୍ଣ୍ଣ ହୋଇ ପାରିଥାନ୍ତା ଏବଂ ସେ ପି. ଏଚ୍. ଡି. ଡିଗ୍ରୀ ନେଇ ଭାରତକୁ ଫେରି ଆସି ପାରିଥାନ୍ତେ । କିନ୍ତୁ ସତ୍ୟେନ୍ଦ୍ର ନାଥ ଡିଗ୍ରୀ ଅପେକ୍ଷା ବିଜ୍ଞାନକୁ ଅଧିକ ପସନ୍ଦ କରୁଥିଲେ । ବହୁ ହିତୈଷୀ ବନ୍ଧୁମାନଙ୍କର ବାରଣକୁ ନ ମାନି ସେ ଆଇନ୍‌ଷ୍ଟାଇନ୍‌ଙ୍କ ନିକଟରେ ପହଞ୍ଚିଲେ । ଆଇନ୍‌ଷ୍ଟାଇନ୍ ସତ୍ୟେନ୍ଦ୍ର ନାଥଙ୍କୁ ଦେଖି ଅତ୍ୟନ୍ତ ପ୍ରୀତ ହେଲେ ଏବଂ ତାଙ୍କ ଗବେଷଣାଗାରରେ ଗବେଷଣା ଆରମ୍ଭ କରିବାକୁ ନିର୍ଦ୍ଦେଶ ଦେଲେ ।

ସତ୍ୟେନ୍ଦ୍ର ନାଥ ଜର୍ମାନିରେ ଗବେଷଣାରେ ରତ ଥିବା ସମୟରେ ଢାକା ବିଶ୍ୱବିଦ୍ୟାଳୟରେ ପ୍ରଫେସର ପଦରେ ଯୋଗ ଦେବା ପାଇଁ ତାଙ୍କ ପାଖରେ ପତ୍ର ପହଞ୍ଚିଲା । ସେ ଦେଶକୁ ଫେରିଆସିବା ପାଇଁ ଆଇନ୍‌ଷ୍ଟାଇନ୍‌ଙ୍କର ଅନୁମତି ନେଉଥିବା ସଙ୍ଗେ ସଙ୍ଗେ ତାଙ୍କଠାରୁ ଏକ ସୁପାରିସ୍ ପତ୍ର ଚାହିଁଲେ । ସତ୍ୟେନ୍ଦ୍ର ନାଥଙ୍କ ଭଳି ଜଣେ ବିଚକ୍ଷଣ ଏବଂ ମେଧାବୀ ବୈଜ୍ଞାନିକ ତାଙ୍କ ଠାରୁ ସୁପାରିସ୍ ପତ୍ର ଚାହୁଁ ଥିବାର ଜାଣି ଆଇନ୍‌ଷ୍ଟାଇନ୍ ବିସ୍ମିତ ହୋଇଯାଇଥିଲେ । ଆଇନ୍‌ଷ୍ଟାଇନ୍‌ଙ୍କର ବିସ୍ମୟକୁ ଦୂର କରିବା ପାଇଁ ସତ୍ୟେନ୍ଦ୍ରନାଥ କହିଲେ "ଭାରତରେ ଜ୍ଞାନ ଅପେକ୍ଷା ବିଦେଶୀ ଡିଗ୍ରୀକୁ ବେଶୀ ସମ୍ମାନ ଦିଆଯାଏ । ଯେହେତୁ ସେ ଡିଗ୍ରୀ ପାଇବା ସୌଭାଗ୍ୟରୁ ବଞ୍ଚିତ ହେଲେ ତେଣୁ ତାଙ୍କର ସୁପାରିସ୍ ପତ୍ର ଖଣ୍ଡିକ ନିଶ୍ଚୟ ତାଙ୍କୁ ଯଥେଷ୍ଟ ସାହାଯ୍ୟ କରି ପାରିବ ।"

ଆଇନ୍‌ଷ୍ଟାଇନ୍ ସତ୍ୟେନ୍ଦ୍ର ନାଥଙ୍କର ଏହି ଉକ୍ତି ଶୁଣି ଖଣ୍ଡିଏ ସୁପାରିସ୍ ପତ୍ର ତାଙ୍କୁ ଲେଖି ଦେଇଥିଲେ ।

ଜର୍ମାନିରୁ ଢାକା ଫେରିଆସି ୧୯୨୬ ମସିହାରେ ସତ୍ୟେନ୍ଦ୍ର ପ୍ରଫେସର ପଦରେ ଯୋଗ ଦେଲେ ।

ଗୀତାରେ ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଛନ୍ତି—କର୍ମରେ ତୁମର ଅଧିକାର ଅଛି । ତୁମେ କାର୍ଯ୍ୟରେ ଫଳାଫଳ ପ୍ରତି ଆଶା ନ ରଖି କର୍ମ କରିଯାଅ । ଫଳ ଆପେ ଆପେ ଆସିବ । ସତ୍ୟେନ୍ଦ୍ର ନାଥ କର୍ମ-ଯୋଗୀ ଥିଲେ । ତେଣୁ ୧୯୨୪ ମସିହାରେ ତାଙ୍କର ଯେଉଁ ପ୍ରବନ୍ଧକୁ ଆଇନ୍‌ଷ୍ଟାଇନ୍ ଅନୁବାଦ କରି ଜର୍ମାନ୍ ଭାଷାରେ ପ୍ରକାଶିତ କରାଇଥିଲେ, ପରବର୍ତ୍ତୀ କାଳରେ ବିଶ୍ୱର ବୈଜ୍ଞାନିକମାନେ ଏହାକୁ "ବୋଷଆଇନ୍-ଷ୍ଟାଇନ୍" ତତ୍ତ୍ୱ ନାମରେ ଅଭିହିତ କରି ସତ୍ୟେନ୍ଦ୍ର ନାଥ ବୋଷଙ୍କ ନାମ ବିଜ୍ଞାନର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିଗଲେ ।

ଢାକା ବିଶ୍ୱବିଦ୍ୟାଳୟରେ ଦୀର୍ଘ ପଚିଶି ବର୍ଷ ଧରି ସେ ସ୍ନାତୋକତ୍ତର କ୍ଲାସରେ ଅଧ୍ୟାପନା କରି ବିଶେଷ ଛାତ୍ରପ୍ରିୟ ହୋଇପାରିଥିଲେ ।

୧୯୪୫ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରେ ଖଇରା ପ୍ରଫେସର ରୂପେ ଯୋଗଦେବାକୁ ତାଙ୍କୁ ଅନୁରୋଧ କରାଗଲା । ପଦାର୍ଥ ବିଜ୍ଞାନ ବିଭାଗର ଏହି ପ୍ରଫେସର ପଦବୀଟି ଗୋଟିଏ ସମ୍ମାନଜନକ ସ୍ଥାନ ଥିଲା । ଢାକା ବିଶ୍ୱବିଦ୍ୟାଳୟରୁ ସେ ବିଦାୟ ନେଇ ଯେଉଁ ବିଶ୍ୱବିଦ୍ୟା-ଳୟ ଅଧୀନରେ ସେ ତାଙ୍କର ପ୍ରଥମ ଶିକ୍ଷକତା ଜୀବନ ଆରମ୍ଭ କରିଥିଲେ, ସେହିଠାକୁ ପୁଣି ଫେରି ଆସିଲେ ।

କଲିକତା ବିଶ୍ୱବିଦ୍ୟାଳୟରେ ସେ ଖଇରା ପ୍ରଫେସର ରୂପେ ୧୯୫୬ ମସିହା ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । କେବଳ ଯେ ସେ ଜଣେ ଆଦର୍ଶ ଶିକ୍ଷକ ଥିଲେ ତାହା ନୁହେଁ; ଜଣେ ନିଷ୍ଠାପର ବୈଜ୍ଞାନିକ ଥିଲେ । ସେ "ଖଇରା ପ୍ରଫେସର" ରୂପେ କାର୍ଯ୍ୟ କରିବା ସମୟରେ କଲିକତା ବିଶ୍ୱବିଦ୍ୟାଳୟରେ ପଦାର୍ଥ ବିଜ୍ଞାନ ବିଭାଗର ସର୍ବୋଚ୍ଚଭାବେ ଉନ୍ନତି କରାଇ ଥିଲେ ।

ଦୀର୍ଘ ଏଗାର ବର୍ଷ ଧରି ଖଇରା ପ୍ରଫେସର ରୂପେ କାର୍ଯ୍ୟ କଲା- ପରେ ସତ୍ୟେନ୍ଦ୍ର ନାଥ ବୋଷ କର୍ମମୟ ଜୀବନରୁ ଅବସର ଗ୍ରହଣ କଲେ । ଅବସର ଗ୍ରହଣ ପରେ ସତ୍ୟେନ୍ଦ୍ର ନାଥଙ୍କ ଅବଶିଷ୍ଟ ସମୟ ଆଦୌ ଆଳସ୍ୟରେ କଟି ନ ଥିଲା । କବି ବନ୍ଧୁ ବିଶ୍ୱକବି ରବୀନ୍ଦ୍ର ନାଥଙ୍କର ଅନୁ- ରୋଧ କ୍ରମେ ସେ ୧୯୫୬ ମସିହାରୁ ୧୯୫୮ ମସିହା ପର୍ଯ୍ୟନ୍ତ କବିଗୁରୁଙ୍କ ପ୍ରତିଷ୍ଠିତ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟର କୁଳପତି ଦାୟିତ୍ୱ ଗ୍ରହଣ କରି- ଥିଲେ । ୧୯୫୮ ମସିହାରେ ବିଜ୍ଞାନ କ୍ଷେତ୍ରରେ ତାଙ୍କର ଅସମାନ୍ୟ କୃତିତ୍ୱ ପାଇଁ ତାଙ୍କୁ ଫେଲୋ ଅଫ୍ ରୟାଲ ସୋସାଇଟି ରୂପେ ଇଂଲଣ୍ଡ ସରକାର ଗ୍ରହଣ କରିଥିଲେ ।

ସତ୍ୟେନ୍ଦ୍ର ନାଥ ବୋଷଙ୍କୁ ଏହାପରେ ଅନେକ ବିଶ୍ୱବିଦ୍ୟାଳୟ ତରଫରୁ ସମ୍ମାନ ସୂଚକ ଡ. ଏସ୍. ସି. ଉପାଧିମାନ ମିଳିଥିଲା । ଜଣେ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ ରୂପେ ସେ ଡଃ ମେଘନାଦ ସାହା ସ୍ୱର୍ଣ୍ଣ ପଦକ ବିଜେତା ରୂପେ ସମ୍ମାନିତ ହୋଇଥିଲେ । ଭାରତ ସରକାର ତାଙ୍କୁ ପଦ୍ମବିଭୂଷଣ ଉପାଧି ପ୍ରଦାନ କରିଥିଲେ । ସେ ଏକ ବର୍ଷ ପାଇଁ ଭାରତୀୟ ବିଜ୍ଞାନ କଂଗ୍ରେସର ସଭାପତି ଥିଲେ ଏବଂ ମୃତ୍ୟୁ ପର୍ଯ୍ୟନ୍ତ "ନ୍ୟାସନାଲ ପ୍ରଫେସର" ରୂପେ ସମ୍ମାନିତ ହୋଇଥିଲେ ।

୧୯୭୪ ମସିହା ଫେବୃଆରୀମାସ ଚାରି ତାରିଖ ଦିନ ଭାରତୀୟ ବିଜ୍ଞାନ ଆକାଶରୁ ଏହି ମହନୀୟ ପ୍ରତିଭାର ତିରୋଧାନ ଘଟିଲା । ଦୀର୍ଘ ଅଶି ବର୍ଷର ଏକ କର୍ମମୟ ଜୀବନର ଅବସାନ ପରେ ଭାରତୀୟ ଜନତା ଏହିଭଳି ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବୈଜ୍ଞାନିକଙ୍କୁ ହରାଇ ଯେ କିଭଳି କରୁଣ ମର୍ମବେଦନା ଅନୁଭବ କରିଥିବେ; ତାହା ବର୍ଣ୍ଣନା କରିବା ସମ୍ଭବପର ନୁହେଁ ।

# ଡକ୍ଟର ଏମ୍, ଭିଶେଶ୍ୱରାୟା

## ( ୧୮୬୧-୧୯୬୨ )

ଆଧୁନିକ ଭାରତର ନିର୍ମାତା ରୂପେ ଇଞ୍ଜିନିୟର ଏମ୍. ଭିଶେଶ୍ୱ-ରାୟାଙ୍କୁ ବୁଝାଯାଏ ଠିକ୍ ଯେପରି ଜାତିର ପିତା କହିଲେ ବାପୁଜୀଙ୍କୁ ବୁଝାଏ । ଭାରତବର୍ଷରେ ଯେତେ ବଡ଼ ବଡ଼ ବନ୍ଧ, କୋଠାବାଡ଼ି, ଏବଂ କଳ କାରଖାନା ଦେଖିବାକୁ ମିଳେ ସବୁ ଏହି ପୃଥିବୀ ବିଖ୍ୟାତ ଇଂଜିନିୟରଙ୍କର ଅବଦାନ ।

ମହୀଶୂର ପ୍ରଦେଶର କୋଲର ଜିଲ୍ଲା ଅନ୍ତର୍ଗତ ମୁଦେନ୍ହାହାଲି ଗ୍ରାମରେ ୧୮୬୧ ମସିହା ସେପ୍ଟେମ୍ବର ପନ୍ଦର ତାରିଖରେ ଭିଶେଶ୍ୱରାୟା ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଶ୍ରୀନିବାସ ଶାସ୍ତ୍ରୀ ଏବଂ ମାତାଙ୍କ ନାମ ଭେନ୍‌କାଚ୍ଚମ୍ମା । ଶ୍ରୀନିବାସ ଶାସ୍ତ୍ରୀ ଜଣେ ପ୍ରବୀଣ ସଂସ୍କୃତଜ୍ଞ ପଣ୍ଡିତ ଥିଲେ । ହିନ୍ଦୁ ଧର୍ମର ଆଗ୍ରହ ନିଷ୍ଠା ତାଙ୍କର ଅସ୍ଥି ମଜ୍ଜାଗତ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଶ୍ରୀନିବାସ ଶାସ୍ତ୍ରୀଙ୍କ ଘରେ ସଦାସର୍ବଦା ଅତିଥି ଅଭ୍ୟାଗତଙ୍କ ଅଭ୍ୟର୍ଥନା ସଙ୍ଗେ ସଙ୍ଗେ ସଂସ୍କୃତ ଶାସ୍ତ୍ରର ଆଲୋଚନା ଲାଗିରହୁଥାଏ । ଧର୍ମପ୍ରିୟ ପିତା ଓ ମାତାଙ୍କ ପ୍ରଭାବ ଭିଶେଶ୍ୱରାୟାଙ୍କର ବାଲ୍ୟଜୀବନକୁ ଯଥେଷ୍ଟ ପ୍ରଭାବିତ କରିପାରିଥିଲା ।

ବିଶ୍ୱେଶ୍ୱରୟା ତାଙ୍କର ବାଲ୍ୟଶିକ୍ଷା ଚିକ୍କାବଲ୍ଲପୁରଠାରେ ଆରମ୍ଭ କରିଥିଲେ । ତାହାପରେ ସେ ବାଙ୍ଗାଲୋରସ୍ଥ ସେଣ୍ଟ୍ରାଲ କଲେଜରେ ତାଙ୍କର ଉଚ୍ଚ ଶିକ୍ଷା ଗ୍ରହଣ କରିଥିଲେ ।

କଥାରେ ଅଛି ଲକ୍ଷ୍ମୀ ଓ ସରସ୍ୱତୀଙ୍କର ଅହି-ନକୁଳ ସମ୍ପର୍କ । ଯିଏ ଲକ୍ଷ୍ମୀଙ୍କୁ ଆଶ୍ରା କରେ ତାହାଠାରୁ ସରସ୍ୱତୀ ଦୂରେଇ ଯାଆନ୍ତି ଏବଂ ଯିଏ ସରସ୍ୱତୀଙ୍କୁ ଆଦର କରେ ସେ ଦରିଦ୍ର ହୁଏ । ଶ୍ରୀନିବାସ ଶାସ୍ତ୍ରୀ ଧର୍ମପରାୟଣ ଏବଂ ସଂସ୍କୃତଜ୍ଞ ପଣ୍ଡିତ ହେତୁ ସରସ୍ୱତୀଙ୍କର ବରପୁତ୍ର ଥିଲେ । ତେଣୁ ଲକ୍ଷ୍ମୀ ତାଙ୍କ ଗୃହର ଚତୁଃସୀମା ଆଦୌ ସ୍ପର୍ଶ କରୁ ନ ଥିଲେ । ଭାରତର ଅଧିକାଂଶ ବୈଜ୍ଞାନିକଙ୍କ ଭଳି ବିଶ୍ୱେଶ୍ୱରୟା ଦରିଦ୍ର ଥିଲେ ।

ସେଣ୍ଟ୍ରାଲ କଲେଜର ଛାତ୍ର ଥିଲାବେଳେ ବିଶ୍ୱେଶ୍ୱରୟାଙ୍କ ପାଖରେ କପର୍ଦ୍ଦକ ସୁଦ୍ଧା ନ ଥିଲା । ସେ ଟିଉସନ କରି ସେହି ଆୟରେ ତାଙ୍କର ପାଠ ପଢ଼ା ଖର୍ଚ୍ଚ ତୁଲାଉଥିଲେ । ଅଧ୍ୟବସାୟ, ଏକାଗ୍ରତା ଏବଂ ଶୃଙ୍ଖଳା-ଜ୍ଞାନ ତାଙ୍କର ପ୍ରଧାନ ଗୁଣ ଥିଲା । ପ୍ରତ୍ୟେକ ଦିନର ପଢ଼ା ସେ ସେହିଦିନ ସମାପ୍ତ କରିଥିଲେ । "ପରେ କରିବି" ଏ ଅଭ୍ୟାସ ତାଙ୍କର ଆଦୌ ନ ଥିଲା । ଠିକ୍ ସମୟରେ ପାଠ ପଢ଼ିବା, ଖେଳିବା ଏବଂ ଖାଇବାକୁ ସେ ଜଗି ଚଳୁଥିଲେ ବୋଲି ଏକମାତ୍ର ବୈଜ୍ଞାନିକ ଯିଏ କି ଶତାୟୁ ହୋଇ-ପାରିଥିଲେ ।

ପାଠ ପଢ଼ିବାକୁ ସମ୍ବଳ ନାହିଁ । ପୋଷାକପତ୍ର ଅତି ସାଧାରଣ । ବହି ପତ୍ର ଯାହା ଆବଶ୍ୟକ ସାଙ୍ଗ ସାଥୀ ଏବଂ ଲାଇବ୍ରେରୀରୁ ଆଣି ପଢ଼ି-ବାକୁ ହୁଏ । ଏତେ ଅଭାବ ଅସୁବିଧା ଭିତରେ ଏହି ଦରିଦ୍ର ବାଳକଟି ବି.ଏ. ପରୀକ୍ଷାରେ ସମଗ୍ର ବିଶ୍ୱବିଦ୍ୟାଳୟରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହୋଇ-ଥିଲେ । ବିଶ୍ୱବିଦ୍ୟାଳୟରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇଥିବାରୁ ସେ

ସରକାରୀ ବୃତ୍ତି ପାଇ ପୁନା ବିଜ୍ଞାନ କଲେଜରେ ଇଂଜିନିୟରିଙ୍ଗ୍ ପଢ଼ିବା ପାଇଁ ସମର୍ଥ ହୋଇପାରିଲେ ।

ଇଂଜିନିୟରିଙ୍ଗ ବିଦ୍ୟାରେ ଅଧିକ ପରିଶ୍ରମ କରିବାକୁ ହୁଏ । ବିଶେଶ୍ୱରାୟା ବାଲ୍ୟକାଳରୁ ଆଦୌ ଶ୍ରମକାତର ନ ଥିଲେ । ତାଙ୍କର ଗଭୀର ଅଧ୍ୟବସାୟ ଫଳରେ ସେ ଇଂଜିନିୟରିଙ୍ଗ୍ ଶେଷ ପରୀକ୍ଷାରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହେଲେ ।

ପାଠ ପଢ଼ା ସରିବା ସଙ୍ଗେ ସଙ୍ଗେ ଦାଣ୍ଡ ଦୁଆରେ ଚାକିରୀ ଆସି ହାଜର । ସେ ବମ୍ବେ ସରକାରଙ୍କର ନିମନ୍ତ୍ରଣ ରକ୍ଷା କରି ନାସିକ୍‌ଠାରେ ଆସିଷ୍ଟାଣ୍ଟ ଇଂଜିନିୟର ରୂପେ ଯୋଗଦେଲେ ।

ବମ୍ବେଠାରେ ସେ କାର୍ଯ୍ୟଭାର ଗ୍ରହଣ କଲାପରେ ଦେଖିଲେ ଯେ ନଦୀରେ ବନ୍ଧ ଏବଂ ଆନିକଟ୍ ନ ଥିବା ହେତୁ ସିନ୍ଧୁ ନଦୀର ଜଳ ଅଯଥା ନଷ୍ଟ ହୋଇ ଯାଉଛି । ବନ୍ୟା ସମୟରେ ଲୋକମାନେ ଯେତିକି କଷ୍ଟ ପାଉଛନ୍ତି, ଧନ ସେତିକି ନଷ୍ଟ ହେଉଛି । ସବୁବେଳେ ଜମିବାଡ଼ିସବୁ କେବଳ କ୍ଷତିଗ୍ରସ୍ତ ହେଉଛି । ଜମିରେ ବାଲି ମାଡ଼ି ଯାଉଛି । ଯାହାଫଳରେ ବର୍ଷ ବର୍ଷ ଧରି କ୍ଷେତମାନଙ୍କରେ ଫସଲହାନି ହେଉଛି । ପୁଣି ଯେଉଁବର୍ଷ ଅନାବୃଷ୍ଟି ହେଉଛି ସେ ବର୍ଷ ପାଣି ସଞ୍ଚିତ ହୋଇ ନ ଥିବା ହେତୁ ଫସଲ ହେବା ପାଇଁ ପାଣିର ଅଭାବ ହେଉଛି । ଏ ସବୁ ଦେଖି ବିଶେଶ୍ୱରାୟା ପ୍ରଥମେ ଚିନ୍ତା କଲେ ଜଳ ସମ୍ପଦର ସୁରକ୍ଷା ଏବଂ ସମବଣ୍ଟନ ହେଉଛି ତାଙ୍କର ପ୍ରଥମ କାର୍ଯ୍ୟ । ସେ ପାଠ ପଢ଼ିଲା ବେଳୁ ଜାଣନ୍ତି ଭାରତ ହେଉଛି ଗୋଟିଏ କୃଷି ପ୍ରଧାନ ଦେଶ । କୃଷି ଅଧିକାଂଶର ପ୍ରଧାନ ଜୀବିକା । ରହିବା ପାଇଁ ପ୍ରଥମେ ଖାଦ୍ୟ ଦରକାର । ତାହାପରେ ବାସଗୃହ ।

ଏହିକଥା ବିଶ୍ୱେଶ୍ୱରୟା ମନେ ମନେ ସ୍ଥିର କରି ବଡ଼ ବଡ଼ ଅଟ୍ଟାଳିକା ସବୁ ନିର୍ମାଣ କରିବାକୁ ମନ ନ ବଳାଇ ସିନ୍ଧୁ ନଦୀର ଜଳର ସଦ୍‌ବ୍ୟବହାର କରିବା ପାଇଁ ଏକ ନକ୍ସା ଅଙ୍କନ କଲେ । ତାଙ୍କର ଏହି ନକ୍ସାକୁ ବମ୍ବେ ସରକାର ତତ୍‌କାଳୀନ ଅନ୍ୟାନ୍ୟ ଇଂଜିନିୟର ମାନଙ୍କୁ ଦେଖାଇଲେ । ସେମାନେ ବିଶ୍ୱେଶ୍ୱରୟାଙ୍କର ନକ୍ସାର ଭୂୟସୀ ପ୍ରଶଂସା କଲେ । ଫଳରେ ବମ୍ବେ ସରକାର ଅର୍ଥ ମଞ୍ଜୁର କଲେ ଏବଂ ସିନ୍ଧୁ ନଦୀର ଜଳ ସଞ୍ଚିତ ହୋଇ କୃଷି କାର୍ଯ୍ୟରେ ସଦୁପଯୋଗ ହୋଇପାରିଲା । ସରକାର ଯେତିକ ଅର୍ଥ ଏ ବାବଦରେ ଖଟାଇଥିଲେ ବର୍ଷ କେତେଟା ପରେ କେବଳ କୃଷିରୁ ତାଙ୍କର ଦ୍ୱିଗୁଣ ଆଦାୟ ହେଲା ।

ସେତେବେଳେ ଭାରତ ସ୍ୱାଧୀନ ନ ଥିଲା । ଇଂରେଜମାନେ ଏ ଦେଶକୁ ଶାସନ କରୁଥିଲେ । ବିଶ୍ୱେଶ୍ୱରୟାଙ୍କ ଯୋଜନାର ସଫଳତା ସେମାନଙ୍କର ଦୃଷ୍ଟି ଆକର୍ଷଣ କଲା । ସେମାନେ ତାଙ୍କର ବୁଦ୍ଧିର ସଦୁପଯୋଗ କରିବା ପାଇଁ ତାଙ୍କୁ ବଡ଼ ବଡ଼ କଷ୍ଟ କାର୍ଯ୍ୟ ସବୁ ଦେଲେ । ବିଶ୍ୱେଶ୍ୱରୟା ବିନା ପ୍ରତିବାଦରେ ସମସ୍ତ ଦାୟିତ୍ୱ ଗ୍ରହଣ କଲେ କାରଣ ସେ ଜାଣନ୍ତି ସେ ଯେଉଁ ଅଧ୍ୟବସାୟ ଓ ପରିଶ୍ରମ କରିବେ ତାର ଫଳ ଏହି ଭାରତବର୍ଷରେ ହିଁ ରହିବ ।

କୋହ୍ଲାପୁର ନିକଟରେ ଗୋଟିଏ ହ୍ରଦ ହେତୁ ସମଗ୍ର ସହରଟିର ଧନ ଜୀବନ ବିପନ୍ନ ହୋଇ ଉଠିଥିଲା । ସେହି ସହରଟିର ସୁରକ୍ଷାର ଦାୟିତ୍ୱ ବିଶେଶ୍ୱରୟାଙ୍କୁ ଦିଆଗଲା । ସେ ତାଙ୍କର ବୁଦ୍ଧି ପ୍ରୟୋଗ କରି ହ୍ରଦଟିର ମରାମତି କାର୍ଯ୍ୟ ସମ୍ପୂର୍ଣ୍ଣ କରିବା ଫଳରେ କୋହ୍ଲାପୁର ସହରଟି ଆସନ୍ନ ବିପଦରୁ ରକ୍ଷା ପାଇଲା ।

ସେ ତାଙ୍କର କାର୍ଯ୍ୟ ପାଇଁ ପ୍ରଶଂସା ଅର୍ଜିବା ସଙ୍ଗେ ସଙ୍ଗେ ପଦୋନ୍ନତ ମଧ୍ୟ ଲାଭକଲେ । ସେ କଟକଠାରୁ ହାଇଦ୍ରାବାଦକୁ ଚିଫ୍ ଇଂଜିନିୟର ପଦକୁ ଉନ୍ନୀତ ହୋଇ ବଦଳି ହେଲେ । ହାଇଦ୍ରାବାଦ ସହର ଭିତରେ ମୋସା ନଦୀ ପ୍ରବାହିତ ହୋଇ ସହରର ଜୀବନଯାତ୍ରାରେ ବହୁ ଅସୁବିଧା ସୃଷ୍ଟି କରୁଥିଲା । ଏକଦା ଏହି ନଦୀରେ ଏପରି ବନ୍ୟା ହେଲା ଯେ ସମଗ୍ର ହାଇଦ୍ରାବାଦ ସହରର ଯାହା କ୍ଷତି ହେଲା ତାହାକୁ ପୂର୍ଣ୍ଣ କରିବା ସରକାରଙ୍କ ପକ୍ଷରେ ସାଧ୍ୟାତୀତ ହୋଇ ଉଠିଲା ।

ବିଶେଶ୍ୱରାୟା ଏହି ନଦୀର ଗତିପଥକୁ ନିୟନ୍ତ୍ରିତ କରିବା ସଙ୍ଗେ ସଙ୍ଗେ ଦୁଇ ଭାଗରେ ବିଭକ୍ତ ହୋଇଥିବା ସହରକୁ ଗୋଟିଏ ସମ୍ପୂର୍ଣ୍ଣ ସହରରେ ପରିଣତ କରିପାରିଲେ । ହାଇଦ୍ରାବାଦ ସହର ପ୍ରତି ଏହା ହେଉଛି ତାଙ୍କର ବଡ଼ ଅବଦାନ ।

ହାଇଦ୍ରାବାଦରୁ ବିଶେଶ୍ୱରାୟାଙ୍କର ବଦଳି ମହୀଶୂର ଷ୍ଟେଟ୍‌କୁ ହେଲା । ସେତେବେଳେ ମହାରାଜା ଏହାର ଶାସକ ଥିଲେ । ମହୀଶୂର ଷ୍ଟେଟ ତାଙ୍କର ଜନ୍ମଭୂମି ଥିଲା । ଏଠାରେ ଚିଫ୍ ଇଂଜିନିୟର ଭାବରେ ଯୋଗ ଦେଇ କେବଳ କୋଠାବାଡ଼ି, ନଦୀ ବନ୍ଧ ପ୍ରଭୃତି କରି ତାଙ୍କର କର୍ତ୍ତବ୍ୟ ସମାପନ କରିବାକୁ ସେ ଉଚିତ୍ ମନେକଲେ ନାହିଁ । ସେ ଦେଖିଲେ ଭାରତର ଅଧିକାଂଶ ଅଧିବାସୀ ନିରକ୍ଷର ହୋଇ ଦାରିଦ୍ର୍ୟର ସୀମାରେଖା ତଳେ ରହି ଦୁଃଖ ପାଉଛନ୍ତି । ଯେଉଁ କେତେଜଣ ସହର ବାସିନ୍ଦା ହେତୁ ସାମାନ୍ୟ ଶିକ୍ଷା ପାଇ ପାରିବାର ସୁଯୋଗ ପାଉଛନ୍ତି ସେମାନେ ପରବର୍ତ୍ତୀ ଜୀବନରେ କିରାଣୀ ହୋଇ ଚାକିରିରେ ଭର୍ତ୍ତି ହୋଇଛନ୍ତି । କେବଳ କୃଷି ଉପରେ ନିର୍ଭର କଲେ ଭାରତର ଅଗ୍ରଗତି ହେବା ସମ୍ଭବ ନୁହେଁ । କର୍ମକ୍ଷମ ଯୁବକମାନଙ୍କୁ ବେକାର ହେବାର ଦୁର୍ଭାଗ୍ୟରୁ ବଞ୍ଚାଇବା ପାଇଁ ଶିଳ୍ପ ହିଁ ଏକମାତ୍ର ପନ୍ଥା । ଶିଳ୍ପର ପ୍ରସାର ନ ହୋଇପାରିଲେ

କର୍ମଯୋଗାଣ କରିବା ସମ୍ଭବପର ହୋଇପାରିବ ନାହିଁ । ଶିକ୍ଷାର ପ୍ରସାର ପାଇଁ ଗାଁ-ଗହଳରେ ବିଦ୍ୟାଳୟ ପ୍ରତିଷ୍ଠା, ସ୍ୱାସ୍ଥ୍ୟର ଉନ୍ନତି ପାଇଁ ଡାକ୍ତରୀ ଚିକିତ୍ସାଳୟମାନ ସୃଷ୍ଟି କରିବା ଏବଂ ପ୍ରତ୍ୟେକ ଗାଁ-ଗହଳକୁ ଯାଇ ପହଞ୍ଚି ପାରିବା ପାଇଁ ସବୁଦିଆ ରାସ୍ତା ନିହାତି ଆବଶ୍ୟକ । ସମଗ୍ର ଭାରତ-ବର୍ଷରେ ହଠାତ୍ ଏହିଭଳି ଯୋଜନା କାର୍ଯ୍ୟକାରୀ କରିବା ଆଦୌ ସମ୍ଭବପର ନୁହେଁ । ସେ ତ ରାଜନୈତିକ ନେତା ନଥିଲେ—ଜଣେ ସରକାରୀ କର୍ମଚାରୀ ଥିଲେ । ତେଣୁ ସେ ମହୀଶୂର ଷ୍ଟେଟ୍‌ର ଉନ୍ନତି କଳ୍ପେ ତିଆରି କରିଥିବା ତାଙ୍କର ଯୋଜନାକୁ ମହାରାଜାଙ୍କ ନିକଟରେ ଦାଖଲ କଲେ ।

ବିଶେଶ୍ୱରୟ୍ୟାଙ୍କ ଯୋଜନା ଦେଖି ମହାରାଜା ଏପରି ପ୍ରୀତ ହୋଇ-ଗଲେ ଯେ, ତାଙ୍କୁ ତାଙ୍କ ରାଜ୍ୟର ଦେଓ୍ୱାନ ପଦରେ ନିଯୁକ୍ତ କଲେ । ସେତେବେଳେ ତିନିଜଣ ମନ୍ତ୍ରୀ ନିଯୁକ୍ତ କରି ମହାରାଜା ସେମାନଙ୍କଦ୍ୱାରା ରାଜ୍ୟର ଶାସନ କାର୍ଯ୍ୟ ଚଳାଉଥିଲେ । ଏହି ତିନିଜଣ ମନ୍ତ୍ରୀଙ୍କ ଭିତରେ ଯେ ମୁଖ୍ୟ ତାହାଙ୍କୁ ଦେଓ୍ୱାନ କୁହା ଯାଉଥିଲା ।

ମହୀଶୂର ଷ୍ଟେଟର ଦେଓ୍ୱାନ ରୂପେ ବିଶେଶ୍ୱରୟ୍ୟା ଛଅ ବର୍ଷ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ଦୀର୍ଘ ପଚିଶ ବର୍ଗ ମାଇଲ ଲମ୍ବର "କୃଷ୍ଣରାଜ ସାଗର" ହେଉଛି ତାଙ୍କର ମହୀଶୂରକୁ ବଡ଼ ଅବଦାନ । ଏହି କୃଷ୍ଣରାଜ ସାଗର ଖନନ କରିବା ପରେ ମହୀଶୂର ରାଜ୍ୟରୁ ସବୁଦିନ ପାଇଁ ଜଳକଷ୍ଟ ଦୂର ହେଲା । ସବୁଜ ଶସ୍ୟରେ ମହୀଶୂର ବର୍ଷକର ବାରମାସ ହସିଉଠିଲା ।

ବାଲ୍ୟକାଳରୁ ବିଶେଶ୍ୱରୟ୍ୟାଙ୍କର ଶୃଙ୍ଖଳା ପ୍ରତି ପ୍ରଗାଢ଼ ଅନୁରକ୍ତି ଥିଲା । ସେ ଦେଓ୍ୱାନ ହୋଇ ମହୀଶୂର ରାଜ୍ୟର ଶାସନ ପରିଚାଳନା କଲାବେଳେ ଏଥିରୁ ଓହରି ଯାଇ ନ ଥିଲେ । ଠିକ୍ ନିୟମିତ ସମୟରେ

ସେ ଯେପରି ଅଫିସ୍‌କୁ ଯାଉଥିଲେ ସେହିପରି ଅନ୍ୟ କର୍ମଚାରୀ ଅନିୟମିତ ହେଲେ ସେ କଠୋର ଶାସ୍ତି ଦେଉଥିଲେ । ରାଜ୍ୟର ପ୍ରତ୍ୟେକ ଜିଲ୍ଲାକୁ ସେ ନିୟମିତ ପରିଦର୍ଶନ କରି ସେଠାକାର ସୁବିଧା ଅସୁବିଧା ବୁଝୁଥିଲେ । ସେ ପରିଦର୍ଶନକୁ ଯିବା ପୂର୍ବରୁ ସେ ଅଞ୍ଚଳର ଶାସନକର୍ତ୍ତାଙ୍କଠାରୁ ସେଠାରେ କେତେ ଡାକ୍ତରଖାନା, କେତେ ସ୍କୁଲ, କୃଷିର ଅଗ୍ରଗତି ଇତ୍ୟାଦି ବିଷୟରେ ଏକ ଆଗୁଆ ରିପୋର୍ଟ ମଗାଇ ନେଉଥିଲେ । ଗସ୍ତ ସମୟରେ ଏହି ରିପୋର୍ଟ ଅନୁଯାୟୀ ସେ ପରିଦର୍ଶନ କରୁଥିଲେ ତାହା ସଙ୍ଗେ ସଙ୍ଗେ ଜିଲ୍ଲାର ଆଉ ଅଧିକ କ'ଣ ଆବଶ୍ୟକତା ରହିଛି ତାହା ମଧ୍ୟ ବୁଝୁଥିଲେ । ସେ ଯେଉଁ ପରିଦର୍ଶନ ରିପୋର୍ଟ ଦେଉଥିଲେ ପୁଣି ଆଉଥରେ ସେହି ଅଞ୍ଚଳକୁ ଗସ୍ତ କରିଯିବା ପୂର୍ବରୁ ତାଙ୍କଦ୍ୱାରା ସୂଚିତ ହୋଇଥିବା ଅଭାବ ଅସୁବିଧା କେତେଦୂର କାର୍ଯ୍ୟକାରୀ ହୋଇଛି ତାହାର ତଦନ୍ତ କରି ବୁଝୁଥିଲେ । ଏହା ଫଳରେ ଜଣେ ଇଂଜିନିୟର ହୋଇ ମଧ୍ୟ ସେ ଜଣେ ଦକ୍ଷ ଶାସକ ହୋଇ ପାରିଥିଲେ ।

ସେ ଦେଓ୍ୱାନ ଥିଲାବେଳେ ମହୀଶୂର ଷ୍ଟେଟ୍‌ରେ ଆଦୌ କଲେଜ ନ ଥିଲା । ତାଙ୍କର ପ୍ରଚେଷ୍ଟାରେ ଏବଂ ଉଦ୍ୟମରେ ମହାରାଣୀ କଲେଜ ସ୍ଥାପିତ ହେଲା । ରାଜ୍ୟରେ ବହୁତ ଭାବରେ ପ୍ରାଥମିକ, ମଧ୍ୟଇଂରାଜୀ ଏବଂ ମାଧ୍ୟମିକ ସ୍କୁଲସବୁ ପ୍ରତିଷ୍ଠିତ ହେଲା । ଶିକ୍ଷା ପ୍ରତି ସେ ବିଶେଷ ଦୃଷ୍ଟି ଦେଇଥିଲେ । ସେ ଉପଲବ୍ଧି କରିଥିଲେ ନିରକ୍ଷରତା ଦୂର ନ ହୋଇପାରିଲେ ଯେତେ ଉନ୍ନତି ସବୁ ବୃଥା ହେବ ।

ମହୀଶୂର ରାଜ୍ୟରେ ଆଦୌ କଲେଜ ଯେତେବେଳେ ନ ଥିଲା ସେତେବେଳେ ବିଶ୍ୱବିଦ୍ୟାଳୟ ପ୍ରଶ୍ନ ଅବା ଉଠୁଛି କେଉଁଠି ? ତାଙ୍କର ଉଦ୍ୟମରେ ଆହୁରି କଲେଜମାନ ସ୍ଥାପିତ ହେଲା । ବିଶେଶ୍ୱରାୟା ଦେଓ୍ୱାନ ଥିବା ସମୟରେ ମହୀଶୂରରେ ଏକ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଇ

ସମସ୍ତ କଲେଜକୁ ମାଡ୍ରାଜ ବିଶ୍ୱବିଦ୍ୟାଳୟରୁ ଆଣି ଏହି ବିଶ୍ୱବିଦ୍ୟାଳୟ ଅନ୍ତର୍ଭୁକ୍ତ କରାଇ ପାରିଥିଲେ । ନାରୀ ଶିକ୍ଷା ପ୍ରତି ସେ ବିଶେଷ ଦୃଷ୍ଟି ଦେଇଥିଲେ । ମେଧାବୀ ଛାତ୍ରମାନଙ୍କୁ ଋଣ ବୃତ୍ତି ଦେଇ ରାଜ୍ୟବାହାରକୁ ଉଚ୍ଚ ଶିକ୍ଷା ପାଇଁ ପଠାଇବାର ବ୍ୟବସ୍ଥା ସେ କରିଥିଲେ ।

ପଦେ କଥାରେ ମହୀଶୂର ରାଜ୍ୟର ଉନ୍ନତି ସର୍ବୋଚ୍ଚ ଭାବରେ ବିଶେଶ୍ୱରୟା ଦେଓ୍ୱାନ୍ ଥିଲାବେଳେ ହୋଇଥିଲା । କେବଳ ଶିକ୍ଷା ନୁହେଁ, ଶିଳ୍ପ ଏବଂ ଅର୍ଥନୈତିକ କ୍ଷେତ୍ରରେ ମହୀଶୂର ଅନ୍ୟ ରାଜ୍ୟ ତୁଳନାରେ ଯଥେଷ୍ଟ ଉନ୍ନତି କରିଥିଲା ।

ଲୋକମାନଙ୍କୁ କମ୍ ସୁଧରେ ଋଣ ଯୋଗାଣ ପାଇଁ ସେ "ମହୀଶୂର ବ୍ୟାଙ୍କ୍" ପ୍ରତିଷ୍ଠା କଲେ । ଏହି ବ୍ୟାଙ୍କ୍ରୁ ପ୍ରଜାମାନେ ଋଣ ନେଇ କୃଷି ଓ ଶିଳ୍ପ କ୍ଷେତ୍ରରେ ଖଟାଇବାର ସୁବିଧା ପାଇଲେ । ଶିଳ୍ପପତିମାନେ ଏହି ବ୍ୟାଙ୍କ୍ ଜରିଆରେ ସେମାନଙ୍କର ବ୍ୟବସାୟ ଆରମ୍ଭ କରିବାକୁ ଲାଗିଲେ । ସେ ବିଦେଶୀ ପର୍ଯ୍ୟଟକମାନଙ୍କ ପାଇଁ ମହୀଶୂରରେ "ପାନ୍ଥନିବାସ" ମାନ ପ୍ରତିଷ୍ଠା କଲେ । ମହୀଶୂରକୁ ରେଲ ପଥ ଆଣିଲେ ।

ମାତ୍ର ଛଅ ବର୍ଷ ମହୀଶୂର ରାଜ୍ୟର ମୁଖ୍ୟ ଶାସକ ହୋଇ ସେ ଯେତିକ ଉନ୍ନତି କରି ଯାଇଛନ୍ତି ତାହା ଦୀର୍ଘଦିନ ଧରି ଶାସନ କ୍ଷେତ୍ରରେ ଥିବା ବ୍ୟକ୍ତିଙ୍କ ପକ୍ଷରେ କରିବା ସମ୍ଭବ ହୋଇପାରୁ ନାହିଁ ।

ତାଙ୍କର ପ୍ରଚେଷ୍ଟାରେ ମହୀଶୂରରେ ଇଞ୍ଜିନିୟରିଙ୍ଗ୍ କଲେଜ ପ୍ରତିଷ୍ଠିତ ହେଲା ଯାହାକି ପରବର୍ତ୍ତୀ କାଳରେ ବିଶେଶ୍ୱରାୟା କଲେଜ ନାମରେ ନାମିତ ହୋଇଛି ।

ବେକାର ଦୂରୀକରଣ ପାଇଁ ସେ ଅନେକ ଯୋଜନା ସ୍ଥିର କଲେ । କେବଳ ଯୋଜନା ସ୍ଥିର କଲେ ନାହିଁ ତାହାକୁ ସଙ୍ଗେ ସଙ୍ଗେ କାର୍ଯ୍ୟକରାଇଲେ । ଶିଳ୍ପର ପ୍ରସାର ନ ହେଲେ ରାଜ୍ୟର ଅଗ୍ରଗତି ହେବା ସମ୍ଭବ ନୁହେଁ ଏହା ସେ ମର୍ମେ ମର୍ମେ ଅନୁଭବ କରୁଥିଲେ । ଚନ୍ଦନ କାଠ ପାଇଁ ମହୀଶୂର ବିଖ୍ୟାତ । ସେ ମହୀଶୂରରେ ଏକ ଚନ୍ଦନ ତେଲ କାରଖାନା ପ୍ରତିଷ୍ଠା କଲେ । ଚନ୍ଦନ ଅର୍କ, ଚନ୍ଦନ ତେଲ, ଚନ୍ଦନ କାଠରେ ତିଆରି ବିଭିନ୍ନ ପ୍ରକାର ସୌଖୀନ ଜିନିଷ ସେ ପ୍ରସ୍ତୁତ କରାଇଲେ । ଏହା ଭାରତର ବିଭିନ୍ନ ପ୍ରଦେଶରେ ବିକ୍ରି ହେବା ସଙ୍ଗେ ସଙ୍ଗେ ଭାରତ ବାହାରେ ମଧ୍ୟ ଆଦର ଲାଭ କଲା । ଜାପାନ ଓ ଇଟାଲୀରୁ କୁଶଳୀ କାରିଗରମାନଙ୍କୁ ଅଣାଇ ସିଲ୍କରେ ଶାଢ଼ୀ, ଚଦର ପ୍ରଭୃତି ବୁଣାଇବା ପାଇଁ ଏକ ସିଲ୍କ ତିଆରି କାରଖାନା ପ୍ରତିଷ୍ଠା କଲେ । ସାବୁନ କାରଖାନା ଓ କଂସାବାସନ ତିଆରି କାରଖାନାମାନ ପ୍ରତିଷ୍ଠା କରାଇବାଦ୍ୱାରା ବେକାର କର୍ମକ୍ଷମ ଯୁବକମାନେ ନିଯୁକ୍ତି ପାଇଲେ । ସେ ଦେୱାନ ଥିଲାବେଳେ ଯେତେସବୁ କାରଖାନା ପ୍ରତିଷ୍ଠା କରାଇଛନ୍ତି ତାହା ଭିତରେ "ଭଦ୍ରାବତୀ ଆଇରନ୍ ଆଣ୍ଡ ଷ୍ଟିଲ ଓ୍ୱାର୍କସ୍" ହେଉଛି ସର୍ବୋତ୍କୃଷ୍ଟ । ଭାରତରେ ଯେ ତ ଖଣିଜ ସମ୍ପଦ ଭର୍ତ୍ତି ହୋଇଛି ତାହାର ସଦୁପଯୋଗ ହୋଇପାରିଲେ ଭାରତ ଯେ ଦିନେ ପୃଥିବୀରେ ଉନ୍ନତ ଦେଶ ହୋଇ ପାରିବ ଏହା ସ୍ୱାଧୀନତା ପରେ ଭାରତୀୟ ନେତୃବର୍ଗ ଉପଲବ୍ଧି କଲେ, କିନ୍ତୁ ସ୍ୱାଧୀନତାର ପଚିଶ ବର୍ଷ ପୂର୍ବରୁ ବିଶ୍ୱେଶ୍ୱରାୟା ମହୀଶୂରରେ ଏକ ଇସ୍ପାତ କାରଖାନା ପ୍ରତିଷ୍ଠା କରିପାରିଲେ । ସେ ଜାଣିଥିଲେ ଆଧୁନିକ ଯୁଗରେ ସୁନା ଅପେକ୍ଷା ଲୁହାର ଆବଶ୍ୟକତା ଯଥେଷ୍ଟ ।

୧୯୧୮ ମସିହାରେ ବିଶ୍ୱେଶ୍ୱରାୟା ନିଜ ଇଚ୍ଛାରେ ଦେୱାନ କାର୍ଯ୍ୟରୁ ଅବସର ଗ୍ରହଣ କରିନେଲେ । କିନ୍ତୁ ସିଏ କର୍ମବୀର ସେ ତ ନୀରବ ହୋଇ ବସି ରହିପାରେ ନାହିଁ । ସେ ଅବସର ଗ୍ରହଣ କରିବା ପରେ

ତାଙ୍କର ବହୁଦିନର ସ୍ୱପ୍ନକୁ ସାର୍ଥକ କରିବାକୁ ଚେଷ୍ଟା କଲେ । ସେ ମହୀଶୂର ରାଜ୍ୟରେ ଏକ ଏୟାର କ୍ରାଫ୍ଟ କାରଖାନା ପ୍ରତିଷ୍ଠା କଲେ । ତାଙ୍କଦ୍ୱାରା ପ୍ରତିଷ୍ଠିତ ହିନ୍ଦୁସ୍ଥାନ ଏୟାର **କ୍ରାଫଟ ଇଣ୍ଡଷ୍ଟ୍ରି** ନାମ ବର୍ତ୍ତମାନ ହିନ୍ଦୁସ୍ଥାନ ଏରୋନୋଟିକ୍ । ଏଠାରେ ଉଡ଼ାଜାହାଜ ସବୁ ତିଆରି ହୋଇ ପାରୁଛି ଏବଂ ଭାରତର ଏହା ହେଉଛି ସବୁଠାରୁ ପ୍ରଧାନ ଉଡ଼ାଜାହାଜ ତିଆରି କାରଖାନା ।

ସ୍ୱାଧୀନତା ପରେ ପରେ ଭାରତ ନବ ନିର୍ମାଣ ଦିଗରେ ଅଗ୍ରସର ହେଲା । ଭାରତର ପ୍ରଥମ ପ୍ରଧାନ ମନ୍ତ୍ରୀ ସ୍ୱର୍ଗୀୟ ପଣ୍ଡିତ ଜବାହାରଲାଲ ନେହେରୁ ଏଥି ପାଇଁ ବିଶେଶ୍ୱରୟାଙ୍କର ସାହାଯ୍ୟ ଓ ପରାମର୍ଶ ନେଉଥିଲେ । ଯେଉଁ ପଞ୍ଚବାର୍ଷିକ ଯୋଜନା ସବୁ ପ୍ରସ୍ତୁତ କରାଗଲା ତହିଁରେ ସେ ସଭ୍ୟ ରହିଲେ । ତାଙ୍କର ପରାମର୍ଶ ଏବଂ ଯୋଜନା ଫଳରେ ଭାରତରେ ନୂଆ-ନୂଆ ନଗରମାନ ଗଢ଼ିଉଠିଲା । ବମ୍ବେ, କରାଚୀ ବରୋଦା, ନାଗପୁର, ରାଜକୋଟରେ ନୂତନ ନୂତନ ଧରଣର ରାସ୍ତା କୋଠାବାଡ଼ି ସବୁ ତିଆରି ହୋଇ ଏହିସବୁ ସହରକୁ ଆକର୍ଷଣୀୟ ଓ ଲୋଭନୀୟ କରି ତୋଳିଲା ।

ଓଡ଼ିଶା ପ୍ରତି ବିଶେଶ୍ୱରାୟାଙ୍କର ଦାନ ଓଡ଼ିଶାବାସୀ ଯାବତ୍ ଚନ୍ଦ୍ରାର୍କେ ଭୁଲିପାରିବେ ନାହିଁ । ବଢ଼ି ଓ ମରୁଡ଼ି ପାଇଁ ଓଡ଼ିଶା ଭାରତ ପ୍ରସିଦ୍ଧ ଥିଲା । ମହାନଦୀର କରାଳ ଗ୍ରାସରେ ଓଡ଼ିଶାର ପ୍ରତିବର୍ଷ ବହୁ ଧନ ଜୀବନ ନଷ୍ଟ ହେଉଥିଲା । ପ୍ରତିବର୍ଷ ବନ୍ୟା ଫଳରେ ଓଡ଼ିଶାର ମେରୁଦଣ୍ଡ ଭାଙ୍ଗି ଯାଉଥିଲା । ଅର୍ଥନୈତିକ ପ୍ରଗତି ଆଦୌ ସମ୍ଭବ ହୋଇ-ପାରୁ ନ ଥିଲା । ଏହି ଗରିବ ପ୍ରଦେଶ ପ୍ରତି ବିଶେଶ୍ୱରୟାଙ୍କ ଦୃଷ୍ଟି ପଡ଼ିଲା । ତାଙ୍କର ଗଭୀର ପରିଶ୍ରମ ଫଳରେ ଓଡ଼ିଶା ଆଜି ପାଇ ପାରିଛି ହୀରାକୁଦ ବନ୍ଧ । ମହାନଦୀରେ ବନ୍ୟା କେବଳ ନିୟନ୍ତ୍ରିତ ହୋଇ

ପାରିଲା ନାହିଁ । ହୀରାକୁଦ ଠାରେ ଜଳ ଭଣ୍ଡାର ସୃଷ୍ଟି ହେବା ଫଳରେ ସମ୍ବଲପୁର ଅଞ୍ଚଳ ଆଜି ଓଡ଼ିଶାର ଶସ୍ୟ ଭଣ୍ଡାର ହୋଇ ପାରିଛି ଏବଂ ବୈଦ୍ୟୁତିକ କ୍ଷେତ୍ରରେ ସମୃଦ୍ଧ ହୋଇ ଓଡ଼ିଶା ଆଜି କଳକାରଖାନା ଚଳାଇ ଉନ୍ନତି ପଥରେ ଆଗେଇ ଚାଲିଛି ।

ଭାରତର ଏହି କୃତବିଦ୍ଧଙ୍କୁ ଯେତେବେଳେ ଶହେ ବର୍ଷ ପୂର୍ତ୍ତି ହେଲା ସେତେବେଳେ ଭାରତ ସରକାର ତାଙ୍କର ସମ୍ମାନାର୍ଥେ ଏକ ଡାକ-ଟିକଟ ପ୍ରଚଳନ କରିଥିଲେ । ଭାରତକୁ ସେ ଯେଉଁ ବଳିଷ୍ଠ ଅବଦାନ ସବୁ ଦେଇଗଲେ ସେଥିପାଇଁ ୧୯୫୫ ମସିହାରେ ତାଙ୍କୁ ସରକାରଙ୍କ ପକ୍ଷରୁ ସର୍ବଶ୍ରେଷ୍ଠ ଉପାଧି "ଭାରତରତ୍ନ"ରେ ଭୂଷିତ କରାଗଲା ।

ପ୍ରକୃତରେ ଭାରତର ଏକ ରତ୍ନ ଥିଲେ ବିଶେଶ୍ବରାୟା । ତାଙ୍କର କାର୍ଯ୍ୟ ପାଇଁ ଦେଶ ଭିତରୁ ଏବଂ ବାହାରୁ ଅନେକ ସମ୍ମାନ ସୂଚକ ଡକ୍ଟରେଟ୍ ଉପାଧି ମିଳିଥିଲା । କିନ୍ତୁ କୌଣସି ପଦ, ପଦବୀ ଓ ଉପାଧିକୁ ସେ ଆଦୌ ଭଲ ପାଉ ନ ଥିଲେ ।

ଆଳସ୍ୟ ଓ ଅକର୍ମଣ୍ୟତାକୁ ବିଶେଶ୍ବରାୟା ଭୀଷଣ ଘୃଣା କରୁଥିଲେ । ଅନେକ ଶିଳ୍ପ କାରଖାନାର ଜନକ, ବହୁ ଆଧୁନିକ ନଗର ନିର୍ମାଣକାରୀ ଏବଂ ଅନେକ ନଦୀରେ ବନ୍ଧ ଓ ଆନିକଟ ତିଆରି କରିବାର ଯନ୍ତ୍ରୀ ଯିଏକି ଭାରତର ଶିକ୍ଷା, ସାଂସ୍କୃତିକ ଏବଂ ଅର୍ଥନୈତିକ ପ୍ରଗତି ପାଇଁ ସମଗ୍ର ଜୀବନ ଉତ୍ସର୍ଗ କରିଥିଲେ ସେହି ଭାରତ ରତ୍ନ ଡକ୍ଟର ଏମ. ବିଶେଶ୍ବରାୟା ୧୯୬୨ ମସିହା ଏପ୍ରିଲ ମାସ ଚଉଦ ତାରିଖ ଦିନ ତାଙ୍କର ପ୍ରିୟ ଭାରତ ଭୂଇଁକୁ ଛାଡ଼ି ସବୁଦିନ ପାଇଁ ଚାଲିଗଲେ ।

ହୀରାକୁଦ ବନ୍ଧ, କୃଷ୍ଣରାଜ ସାଗର, ମହୀଶୂର ଚନ୍ଦନ କାଠ କାରଖାନା ଏବଂ ଭଦ୍ରାବତୀ ଇସ୍ପାତ କାରଖାନା ଭାରତବର୍ଷରେ ଥିବା ପର୍ଯ୍ୟନ୍ତ କୁଳବୃଦ୍ଧ ଶତାୟୁ ଏହି ବୈଜ୍ଞାନିକଙ୍କର ମୃତ୍ୟୁ ହୋଇପାରେ କି ?

●

# ସାମନ୍ତ ଚନ୍ଦ୍ରଶେଖର

## ( ୧୮୩୫-୧୯୦୪ )

ବିଜ୍ଞାନ ଯେଉଁ ଶତାବ୍ଦୀରେ ଉନ୍ନତ ପଥରେ ଅଗ୍ରସର ହୋଇଥାଏ ସେହି ସମୟରେ ଆଧୁନିକ ଯନ୍ତ୍ରପାତି ତ ଦୂରର କଥା ଦୁଇ ଖଣ୍ଡି ବାଉଁଶନଳୀ ସାହାଯ୍ୟରେ ସୁଦୂର ଆକାଶରେ ଥିବା ଗ୍ରହ, ନକ୍ଷତ୍ରର ଗତିବିଧି ଯିଏ ଜାଣିପାରୁଥିଲେ ଏବଂ ନଭମଣ୍ଡଳ ବିଷୟରେ ଏକ ପ୍ରମାଣିକ ଗ୍ରନ୍ଥ ଲେଖି ମହା ମହୋପାଧ୍ୟାୟ ଉପାଧି ପାଇବାକୁ ଯୋଗ୍ୟ ବୋଲି ବିବେଚିତ ହୋଇଥିଲେ ସେ ଆଜି କେବଳ ନୁହନ୍ତି ଜଣେ ଓଡ଼ିଆ ପୁଅ— ସାମନ୍ତ ଚନ୍ଦ୍ର ଶେଖର ସିଂହ, ସମସ୍ତଙ୍କ ଦୃଷ୍ଟିରେ ପଠାଣି ସାମନ୍ତ ରୂପେ ପରିଚିତ ।

ଖଣ୍ଡପଡ଼ା ନାମକ ଏକ ଗଡ଼ଜାତରେ ଚନ୍ଦ୍ରଶେଖରଙ୍କର ଜନ୍ମ । ୧୯୪୮ ମସିହାରେ ସମସ୍ତ ଗଡ଼ଜାତଗୁଡ଼ିକ ରାଜାମାନଙ୍କର ଶାସନରୁ ମୁକ୍ତ ହୋଇ ଓଡ଼ିଶା ସହିତ ମିଶିଗଲା । ବୃହତ୍ତର ଓଡ଼ିଶା ଗଠିତ ହେଲା । ସ୍ୱାଧୀନତା ପୂର୍ବରୁ ଏହି ସବୁ ଗଡ଼ଜାତଗୁଡ଼ିକରେ ଜଣେ ଜଣେ ରାଜା ରାଜତ୍ୱ କରୁଥିଲେ । ପରମ୍ପରା ନୀତି ଅନୁସାରେ ଯିଏ ବଡ଼ ପୁଅ ସେ ରାଜଗାଦି ପାଉଥିଲା ଏବଂ ରାଜା ରୂପେ ରାଜ୍ୟ ଶାସନ କରୁଥିଲା । ଅନ୍ୟ ପୁଅ-

ମାନଙ୍କୁ ସାମନ୍ତ କୁହାଯାଉଥିଲା । ଚନ୍ଦ୍ରଶେଖରଙ୍କ ପିତା ଶ୍ୟାମବନ୍ଧୁ ସିଂହ ରାଜବଂଶୀୟ ଥିଲେ । ତାଙ୍କର ଡାକ ନାମ ବନ୍ଧୁସାନ୍ତ ଥିଲା । ୧୮୩୫ ଖ୍ରୀଷ୍ଟାବ୍ଦ ପୌଷ ମାସ କୃଷ୍ଣପକ୍ଷ ଅଷ୍ଟମୀ ଦିନ ଚନ୍ଦ୍ରଶେଖର ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ମାତାଙ୍କ ନାମ ବିଷ୍ଣୁମାଳୀ ଦେବୀ ।

ଶ୍ୟାମବନ୍ଧୁ ଓ ବିଷ୍ଣୁମାଳୀ ଦେବୀ ଦୁହେଁ ବିଶେଷ ଧର୍ମପରାୟଣ ଥିଲେ । ଦିଅଁ ଦେବତାଙ୍କ ଠାରେ ସେମାନଙ୍କର ଅଚଳା ଭକ୍ତି ଥିଲା । ଅତିଥି ଅଭ୍ୟାଗତ ତାଙ୍କ ଦୁଆରକୁ ଆସୁଥିଲେ ନ ଖାଇ ଫେରୁ ନ ଥିଲେ ।

ଚନ୍ଦ୍ରଶେଖରଙ୍କ ଜନ୍ମ ବୃତ୍ତାନ୍ତ ବିଷୟରେ ଏକ ପ୍ରଚଳିତ କିମ୍ବଦନ୍ତୀ ଅଛି । ତାଙ୍କ ମାତା ବିଷ୍ଣୁମାଳୀ ଦେବୀଙ୍କର କ୍ରମାଗତ ନଅ ଗୋଟି କନ୍ୟା ଜାତ ହେବା ପରେ ପୁଅଟିଏ ହୋଇଥିଲା । କିନ୍ତୁ ଭଗବାନଙ୍କ ନିଗ୍ରହରୁ ଏକମାତ୍ର ପୁତ୍ରଟି ମୃତ୍ୟୁମୁଖରେ ପତିତ ହେଲା । ତେଣୁ ଶ୍ୟାମବନ୍ଧୁ ସିଂହ ଏବଂ ବିଷ୍ଣୁମାଳୀ ଦେବୀ ଅତ୍ୟନ୍ତ ମନ ଦୁଃଖରେ କାଳ କାଟୁଥାନ୍ତି । ଆଉ ଗୋଟିଏ ପୁତ୍ର ଆଶାରେ ଅନେକ ବ୍ରତ, ଉପବାସ ପ୍ରଭୃତି କରୁଥାନ୍ତି । ଏକଦା ଶିବ ଚତୁର୍ଦ୍ଦଶୀ ଉପବାସ କରି ରାତିସାରା ଉଜାଗର ହୋଇ ଜାଗର ଜାଳିବା ପରେ ବିଷ୍ଣୁମାଳୀ ଦେବୀ ଆତୁର ହୋଇ ଶିବ ଲିଙ୍ଗଙ୍କ ପାଖରେ ହାତବଢ଼ାଇ ପ୍ରସାଦରୂପେ ଯାହା ପାଇଲେ ତାହା ଗୋଟିଏ ଚକ୍‌କଣ ପଥର । ତାହାକୁ ମହାଦେବଙ୍କ ପ୍ରସାଦ ଭାବି ଭକ୍ତିରେ ଗିଳିଦେଲେ ।

ଏହାପରେ ତାଙ୍କର ଗର୍ଭବାସ ହେଲା । ସେ ପୁତ୍ରବତୀ ହେଲେ । ମହାଦେବଙ୍କ ଉପବାସ କରିଥିବା ହେତୁ ସେ ପୁତ୍ରର ନାମ ଚନ୍ଦ୍ରଶେଖର ରଖିଲେ । କିନ୍ତୁ ତାଙ୍କ ଉପର ପୁଅଟି ମରିଯାଇଥିବାରୁ ଚନ୍ଦ୍ରଶେଖର ଅପତିଆଣୀ ହେଲେ—ତାଙ୍କୁ ସେଥିପାଇଁ ସେ ପଠାଣି ବୋଲି ଡାକିଲେ

ପରବର୍ତ୍ତୀ ଜୀବନରେ କେବଳ ଖଣ୍ଡପଡ଼ା କାହିଁକି ସମଗ୍ର ଉତ୍କଳ ତାଙ୍କୁ ପଠାଣି ସାମନ୍ତ ବୋଲି ଜାଣିଲେ ।

ନଅଟି ଝିଅ ପରେ ପୁଅଟିଏ ହୋଇଥିବାରୁ ଅଲଅଳ ଗେଲବସର ହେବା କଥା ସ୍ୱାଭାବିକ । ପିଲାଦିନେ ଚନ୍ଦ୍ରଶେଖରଙ୍କର ଯେତେ ଯତ୍ନ ନେଲେ ସୁଦ୍ଧା ସେ ଅତ୍ୟନ୍ତ ରୁଗ୍ଣ ଥିଲେ । ସେଥିପାଇଁ ମାତା ବିଷ୍ଣୁମାଳୀଙ୍କୁ ଅନେକ ଦେବଦେବୀଙ୍କୁ ଆଶ୍ରା କରିବାକୁ ହେଉଥିଲା ।

ପାଞ୍ଚ ବର୍ଷ ବୟସରେ ଚନ୍ଦ୍ରଶେଖର ଗ୍ରାମ ଚାଟଶାଳୀରେ ବିଦ୍ୟା ଆରମ୍ଭ କଲେ । ମାତ୍ର ଦୁଇ ବର୍ଷ ଭିତରେ ସେ ଚାଟଶାଳୀର ପାଠ ଶେଷ କଲେ । "ମଥୁରାମଙ୍ଗଳ" "ଗୋପୀ ଭାଷାଠାରୁ ଅମରକୋଷ' ପର୍ଯ୍ୟନ୍ତ ସବୁ ସେ ମୁଖସ୍ଥ କରିପାରିଲେ । ତାଙ୍କର ସାଧାରଣ ସ୍ମୃତି ଶକ୍ତିରୁ ସେ ଦିନେ ଜଣେ ବଡ଼ ପଣ୍ଡିତ ହେବେ ତାହା ଜଣାପଡ଼ୁଥିଲା ।

ଚାଟଶାଳୀ ଶିକ୍ଷା ପରେ ସେ ଖଣ୍ଡପଡ଼ା ଗଡ଼ରେ ଜଣେ ସଂସ୍କୃତ ପଣ୍ଡିତଙ୍କ ନିକଟରେ କାଳିଦାସଙ୍କର ମେଘଦୂତଠାରୁ ଆରମ୍ଭ କରି ନୈଷଧଙ୍କ କାବ୍ୟ, ସଂସ୍କୃତ ନାଟକ, ବ୍ୟାକରଣ ସବୁ ପାଠ କରି ଆୟତ୍ତ କରିଲେ । ସେତେବେଳକୁ ତାଙ୍କର ବୟସ ମାତ୍ର ଦଶ ବର୍ଷ ।

ଦଶ ବର୍ଷ ବୟସର କିଶୋର ଚନ୍ଦ୍ରଶେଖର କିନ୍ତୁ ସଂସ୍କୃତରେ ସେତେବେଳେ କବିତା ଓ ଶ୍ଳୋକମାନ ରଚନା କରିପାରୁଥିଲେ । ଜ୍ୟୋତିଷ ଶାସ୍ତ୍ର ପ୍ରତି ତାଙ୍କର ପିଲାଦିନରୁ ଆଗ୍ରହ ଜାତ ହୋଇଥିଲା । ତାଙ୍କ ବାପା ଶ୍ୟାମବନ୍ଧୁ ସିଂହ ଜଣେ ଜ୍ୟୋତିଷ ଥିଲେ । ଅନେକ ବ୍ୟକ୍ତି ଜାତକ, ବିବାହ, ମେଳକ ପ୍ରଭୃତି କରାଇବା ପାଇଁ ତାଙ୍କ ପାଖକୁ ଆସୁଥିଲେ । ବାପାଙ୍କ ପ୍ରଭାବରେ ଚନ୍ଦ୍ରଶେଖର ପ୍ରଭାବିତ ହୋଇଥିଲେ ଏବଂ ତାଙ୍କର ଜ୍ୟୋତିଷ ଶାସ୍ତ୍ର ଶିକ୍ଷାର ଆଦ୍ୟଗୁରୁ ସେହି ବାପା ହିଁ ଥିଲେ ।

ଆକାଶରେ ବିଭିନ୍ନ ଗ୍ରହଙ୍କର ଚଳନ ସେ ନିରୀକ୍ଷଣ କରି ଦେଖୁଥିଲେ । ସୂର୍ଯ୍ୟ ଅସ୍ତ ଓ ଉଦୟକୁ ଛାଇ ମାପି ସେ ସମସ୍ତ ନିର୍ଣ୍ଣୟ କରୁଥିଲେ । ସେତେବେଳେ କାଗଜର ପ୍ରଚଳନ ହୋଇ ନ ଥିଲା । ଯାହା ଜାଣୁଥିଲେ ତାହାସବୁ ତାଳପତ୍ରରେ ଲେଖନୀ ସାହାଯ୍ୟରେ ଟିପି ରଖୁଥିଲେ । ଦେଶୀ ଘରେ ମାଆ ବ୍ୟବହୃତ କରୁଥିବା ଫୁଙ୍କନଳୀ ସାହାଯ୍ୟରେ ବଂଶକଣା ବାଟେ ସେ ଆକାଶକୁ ନିରୀକ୍ଷଣ କରି ଗ୍ରହ, ନକ୍ଷତ୍ର ମାନଙ୍କର ଗତି ବିଧି ନିର୍ଣ୍ଣୟ କରିବାକୁ ଆରମ୍ଭ କଲେ ।

ତାଙ୍କୁ ତେଇଶି ବର୍ଷ ସମୟରେ ଗ୍ରହ ନକ୍ଷତ୍ରଙ୍କର ଗତିବିଧି ବିଷୟରେ ଚନ୍ଦ୍ରଶେଖରଙ୍କର ସମ୍ୟକ୍ ଧାରଣା ହୋଇ ସାରିଥାଏ । ଚନ୍ଦ୍ରଗ୍ରହଣ ଏବଂ ସୂର୍ଯ୍ୟ ପରାଗ ବର୍ଷର କେତେବେଳେ ହେବ ତାହା ସେ ତାଙ୍କର ଗଣନାଦ୍ୱାରା ସ୍ଥିର କରି ପାରୁଥିଲେ ।

ଓଡ଼ିଶାରେ ଯେତେ ଗଡ଼ଜାତ ଥିଲା ସେମାନଙ୍କ ମଧ୍ୟରେ ତିଗିରିଆ ହେଉଛି ସବୁଠାରୁ କ୍ଷୁଦ୍ର ରାଜ୍ୟ । ରାଜ୍ୟଟି ସିନା କ୍ଷୁଦ୍ର, କିନ୍ତୁ ସେତେବେଳେ ସେଠାରେ ବଡ଼ ବଡ଼ ପଣ୍ଡିତମାନେ ଥିଲେ । ତିଗିରିଆର ଭୁବନେଶ୍ୱର ବଡ଼ପଣ୍ଡା ତାଙ୍କର ଅଗାଧ ପାଣ୍ଡିତ୍ୟ ପାଇଁ ସେ ସମୟରେ ପ୍ରସିଦ୍ଧ ଥିଲେ । ଚନ୍ଦ୍ରଶେଖର ତାଙ୍କଠାରୁ ବିଦ୍ୟା ଶିକ୍ଷା କରିବା ପାଇଁ ତିଗିରିଆ ଆସି ତାଙ୍କ ପାଖରେ ରହିଲେ । ପଣ୍ଡିତ ଭୁବନେଶ୍ୱର ବଡ଼ପଣ୍ଡା କେବଳ ପଣ୍ଡିତ ନ ଥିଲେ, କିନ୍ତୁ ସବୁ ପଣ୍ଡିତମାନେ ଯେପରି କ୍ଷଣକୋପୀ ହୋଇଥାନ୍ତି ସେ ତାହାର ବ୍ୟତିକ୍ରମ ଥିଲେ । ସେ ଛାତ୍ରବତ୍ସଳ ଓ ସ୍ନେହୀ ଥିଲେ । ତାଙ୍କ ପାଖରେ ପାଠ ପଢ଼ିବାକୁ ଆସୁଥିବା ଛାତ୍ରମାନଙ୍କୁ ସେ ପୁତ୍ରଠାରୁ ଅଧିକ ସ୍ନେହ-ଦୃଷ୍ଟିରେ ଦେଖୁଥିଲେ । ଚନ୍ଦ୍ରଶେଖର ଅତିଶୟ ପରିଶ୍ରମ କରି ତାଙ୍କଠାରୁ ତର୍କ, ଦର୍ଶନ ଶାସ୍ତ୍ର, ସାହିତ୍ୟ, ଜ୍ୟୋତିଷ

ବେଦ, ବେଦାଙ୍ଗ, ଏବଂ ଉପନିଷଦ ପ୍ରଭୃତି ଶିକ୍ଷା କରି ସଂସ୍କୃତ ଭାଷାରେ ପାଣ୍ଡିତ୍ୟ ଅର୍ଜନ ପରେ ଡିଗିରିଆରୁ ଖଣ୍ଡାପଡ଼ା ନେଇ ଆସିଥିଲେ ।

ଡିଗିରିଆରୁ ଆସିବା ପରେ ତେଇଶି ବର୍ଷ ସମୟରେ ସେ ଅନୁଗୁଳ ରାଜବଂଶର ଦାଶରଥି କ୍ଷତ୍ରିୟ ବରସିଂହଙ୍କ କନ୍ୟା ସୀତା ଦେବୀଙ୍କୁ ବିବାହ କରିଥିଲେ ।

ଜ୍ୟୋତିଷ ବିଦ୍ୟା ଦୁଇପ୍ରକାରର, ଫଳିତ ଏବଂ ଗଣିତ । ଜାତକ ତିଆରି, ବିବାହ, ମେଳକ, ଭବିଷ୍ୟତ କଥା ଫଳିତ ଜ୍ୟୋତିଷରୁ ଜାଣିହୁଏ । ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର ଗ୍ରହ ପ୍ରଭୃତିର ଗତି ବିଷୟରେ ଗବେଷଣାକୁ ଗଣିତ ଜ୍ୟୋତିଷ କୁହାଯାଏ । ଚନ୍ଦ୍ରଶେଖର ଫଳିତ ଶାସ୍ତ୍ରରେ ଶୀଘ୍ର ପାରଦର୍ଶିତା ହାସଲ କରିବା ପରେ ଗଣିତ ଜ୍ୟୋତିଷରେ ପାଣ୍ଡିତ୍ୟ ପାଇଁ ଆଗ୍ରହୀ ହୋଇଉଠିଲେ ।

ସହଜରେ ତ ଚନ୍ଦ୍ରଶେଖର ପିଲାଦିନୁ ରୁଗ୍ଣ । ତାପରେ ପ୍ରତ୍ୟହ ରାତି ଉଜାଗର ହୋଇ ଦୁଇ ଖଣ୍ଡ ବାଉଁଶମାନଙ୍କ ସାହାଯ୍ୟରେ ନକ୍ଷତ୍ର, ଚନ୍ଦ୍ର ଏବଂ ଉପଗ୍ରହମାନଙ୍କର ଗତି ବିଧି ଲକ୍ଷ୍ୟ କରି କରି ଦିନକୁ ଦିନ ବିଶେଷ ଦୁର୍ବଳ ହେବାକୁ ଲାଗିଲେ । ଖାଦ୍ୟ ପ୍ରତି ସଦାବେଳେ ସେ ସତର୍କ ଥିଲେ । ନିଜର ଶାରୀରିକ ଅସୁସ୍ଥତା ପ୍ରତି ଆଦୌ ଭ୍ରୂକ୍ଷେପ ନ କରି ସେ ଧ୍ରୁବତାରା, ସପ୍ତର୍ଷି ମଣ୍ଡଳ, ସତାଇଶଟି ନକ୍ଷତ୍ର, ମଙ୍ଗଳ, ବୁଧ, ବୃହସ୍ପତି ପ୍ରଭୃତିର ଦୈନନ୍ଦିନ ଗତି ବିଧି ଲକ୍ଷ୍ୟ କରୁଥିଲେ ।

ଚନ୍ଦ୍ରଶେଖର ସଂସାରୀ ହେବା ସମୟକୁ ପ୍ରାୟ ଦରିଦ୍ର ହୋଇ ପଡ଼ିଥିଲେ କହିଲେ ଚଳେ । ପିତା ଶ୍ୟାମବନ୍ଧୁଙ୍କର ନଅଟି ଝିଅ ଭିତରୁ ଦୁଇଟି ଆଗରୁ ମୃତ୍ୟୁ ମୁଖରେ ପତିତ ହୋଇଥିଲେ । ବାକି ସାତୋଟି ଝିଅଙ୍କର ବିବାହ ପ୍ରଭୃତି କରିବାରେ ଶ୍ୟାମବନ୍ଧୁ ପ୍ରାୟ ସର୍ବସ୍ୱାନ୍ତ ହୋଇ ପଡ଼ିଥିଲେ । ଚନ୍ଦ୍ରଶେଖର ମଧ୍ୟ ସଂସାରୀ ହେବା ପରେ ତାଙ୍କର ପାଞ୍ଚ ପୁଅ

ଓ ଛଅ ଝିଅ ହେଲେ । ପରିବାର ନିୟନ୍ତ୍ରଣ ପ୍ରଥା ସେତେବେଳେ ପ୍ରଚଳିତ ଥିଲେ ହୁଏତ ସାମନ୍ତ ଚନ୍ଦ୍ରଶେଖର ଏତେ ଦୁଃଖ ପାଇ ନ ଥାନ୍ତେ ବୋଲି କେତେକ ଆଜିକାଲି କହିବା ସମୟରେ ପରିବାରର ଦଶମ ସନ୍ତାନ ରୂପେ ସାମନ୍ତ ଚନ୍ଦ୍ରଶେଖରଙ୍କର ଭୂମିଷ୍ଠ ହେବା ସମ୍ଭବ ହୋଇ ପାରିଥାନ୍ତା କି ନାହିଁ କେତେକ ମଧ୍ୟ ଯୁକ୍ତି କରନ୍ତି । ସେ ଯାହାହେଉ ବହୁ କୁଟୁମ୍ବୀ ପରିବାରରେ ଜନ୍ମ ହୋଇ ଏବଂ ବହୁକୁଟୁମ୍ବୀ ପରିବାରର ସ୍ରଷ୍ଟା ହେତୁ ଚନ୍ଦ୍ରଶେଖରଙ୍କୁ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ କଷ୍ଟ ସହିବାକୁ ହୋଇଥିଲି ଏକଥା ଏକ ନିଗ୍ରଢ ସତ୍ୟକଥା ।

ଚନ୍ଦ୍ରଶେଖରଙ୍କର ପ୍ରତିଭା ବିକଶିତ ହେବା ଫଳରେ ରାଜ ସଭାରେ ଅନ୍ୟ ପଣ୍ଡିତମାନେ ତାଙ୍କୁ ଈର୍ଷା କରିବାକୁ ଲାଗିଲେ । ସେତେବେଳେ ଖଣ୍ଡପଡ଼ାର ରାଜା ଥାନ୍ତି ନଟବର ସିଂହ ସାମନ୍ତ । ସେ ସାନ୍ତଙ୍କର ସମ୍ପର୍କରେ ପୁତୁରା ହୁଅନ୍ତି । ତାଙ୍କର ସମସ୍ତ ଭଲଗୁଣ ସତ୍ତ୍ୱେ ଗୋଟିଏ ଖରାପ ଗୁଣ ଥିଲା-ସେଇଟି ହେଲା ସେ ଚୁଗୁଲି ଶୁଣୁଥିଲେ ଏବଂ ଯାହା ଶୁଣୁଥିଲେ ତାକୁ ବିଶ୍ୱାସ ମଧ୍ୟ କରୁଥିଲେ । ଅନେକ ସମୟରେ ଏହି ପଣ୍ଡିତମାନଙ୍କ ଚୁଗୁଲି ଫଳରେ ଚନ୍ଦ୍ରଶେଖରଙ୍କୁ ଅଯଥା ମନସ୍ତାପ ଓ କଷ୍ଟ ଭୋଗିବାକୁ ପଡ଼ିଥିଲା ।

ଚନ୍ଦ୍ରଶେଖର ନିଜ ପିତାଙ୍କ ଠାରୁ ଷୋଳ ବର୍ଷ ବୟସରେ ନକ୍ଷତ୍ର ପରିଚୟ, ଶ୍ରୀପତି ଜାତକ, ଜାତକାଳଙ୍କାର, ଶ୍ରୀନିବାସ ଦୀପିକା, ବୃହତଜାତକ, ସର୍ବାର୍ଥ ଚିନ୍ତାମଣି, ଜ୍ୟୋତିଷ ଚନ୍ଦ୍ରୋଦୟ ଓ ବୃହତ ପାରାଶରୀ ପ୍ରଭୃତି ଫଳିତ ଜ୍ୟୋତିଷ ଶାସ୍ତ୍ରର ଆଲୋଚନା କରିଥିଲେ । ନିଜେ ଗ୍ରହ ନକ୍ଷତ୍ରଙ୍କର ଗତିବିଧି ସ୍ଥିର କରି ଏବଂ ଗୁପ୍ତ ମାଟଦ୍ୱାରା ପରବର୍ତ୍ତୀ କାଳରେ ସେ ତାଙ୍କର ଅର୍ଜିତ ଜ୍ଞାନକୁ ପରୀକ୍ଷିତ କରି-ଥିଲେ । ତାହାପରେ ଲୀଳାବତୀ, ବୀଜଗଣିତ ଓ ତ୍ରିକୋଣମିତି ପ୍ରଭୃତି

ପାଠ କରି ମାତ୍ର ଚଉତିରିଶ ବର୍ଷ ବୟସରେ "ସିଦ୍ଧାନ୍ତ ଦର୍ପଣ" ନାମକ ଗ୍ରନ୍ଥ ରଚନା କଲେ ।

ଚନ୍ଦ୍ରଶେଖର ଗୋଟିଏ ମାନଯନ୍ତ୍ର ନିର୍ମାଣ କରିଥିଲେ । ତାହାର ନାମ "ଗୋଳାଦିଯନ୍ତ୍ର" । ସିଦ୍ଧାନ୍ତଦର୍ପଣ ଗ୍ରନ୍ଥରେ ଏହିଯନ୍ତ୍ର ବିଷୟରେ ସେ ପୁଙ୍ଖାନୁପୁଙ୍ଖ ଆଲୋଚନା କରିଛନ୍ତି । ଏହି ଯନ୍ତ୍ରଦ୍ୱାରା ପର୍ବତ ଓ ବୃକ୍ଷାଦିର ଉଚ୍ଚତା ଓ ଦୂରତା ଜାଣିହୁଏ । ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମତରେ ସୂର୍ଯ୍ୟ ସ୍ଥିର ଅଛି ଏବଂ ପୃଥିବୀ ସୂର୍ଯ୍ୟ ଚାରି ପାଖରେ ବୁଲୁଅଛି । ପ୍ରାଚ୍ୟ ପଣ୍ଡିତ-ମାନଙ୍କ ମଧ୍ୟରେ ଆର୍ଯ୍ୟଭଟ୍ଟ ଏହି ମତକୁ ସ୍ୱୀକାର କରିଥିଲେ ଏବଂ ପରବର୍ତ୍ତୀ କାଳରେ ବରାହମିହିର ଏହି ମତକୁ ପ୍ରତିବାଦ କରି ଦର୍ଶାଇ ଥିଲେ ଯେ ପୃଥିବୀ ସ୍ଥିର ଏବଂ ସୂର୍ଯ୍ୟ ପୃଥିବୀ ଚାରିପଟେ ଘୂରୁଅଛି । ବରାହମିହିରଙ୍କ ଭଳି "ସିଦ୍ଧାନ୍ତ ଦର୍ପଣ" ଗ୍ରନ୍ଥରେ ସାମନ୍ତ ଚନ୍ଦ୍ରଶେଖର ପ୍ରମାଣ ସହ ଯୁକ୍ତି ଦର୍ଶାଇଛନ୍ତି ଯେ ପୃଥିବୀ ସ୍ଥିର ଅଛି ଏବଂ ସୂର୍ଯ୍ୟ ଭ୍ରମଣ କରୁଛି ।

ଏହା ପରେ ପରେ ସାମନ୍ତଙ୍କର ପ୍ରତିଭା ଚାରିଆଡ଼େ ବିକଶିତ ହେବାକୁ ଲାଗିଲା । ତାଙ୍କର ଜ୍ୟୋତିଷ ଶାସ୍ତ୍ରରେ ଗଭୀର ପ୍ରବେଶ ଥିବାର ଜାଣିପାରି ମଞ୍ଜୁଷାର ରାଜା ତାଙ୍କୁ ନିଜ ରାଜ୍ୟକୁ ଡକାଇ ନେଲେ । ଚନ୍ଦ୍ରଶେଖରଙ୍କୁ ପରୀକ୍ଷା କରିବା ପାଇଁ ସେ ମହେନ୍ଦ୍ର ଗିରିର ଉଚ୍ଚତା କେତେ ବୋଲି ପ୍ରଶ୍ନ କଲେ । ସାମନ୍ତ ତାଙ୍କର "ଗୋଳାଦିଯନ୍ତ୍ର" ସାହାଯ୍ୟରେ ମହେନ୍ଦ୍ର ପର୍ବତର ଉଚ୍ଚତା କେତେ ତାହା ସ୍ଥିର କରି ଜଣାଇ ଦେଲେ । ମଞ୍ଜୁଷାର ରାଜା ମହେନ୍ଦ୍ର ପର୍ବତର ଆଗରୁ ସ୍ଥିରୀକୃତ ହୋଇ ରହିଥିବା ଉଚ୍ଚତା ସହ ସାମନ୍ତଙ୍କ ଉଚ୍ଚତା ମିଶାଇ ଦେଖିଲେ ତାହା ସମ୍ପୂର୍ଣ୍ଣ ମିଳିଯାଉଛି । ରାଜା ସଙ୍ଗେ ସଙ୍ଗେ ସାମନ୍ତଙ୍କ ବିଷୟରେ ମାନ୍ଦ୍ରାଜ ସରକାରଙ୍କୁ ଜଣାଇ ଦେବା ପରେ ସମଗ୍ର ଦାକ୍ଷିଣାତ୍ୟ ଅଞ୍ଚଳରେ ତାଙ୍କର ପ୍ରତିଭା ପ୍ରଚାରିତ ହୋଇଗଲା ।

ଚନ୍ଦ୍ରଶେଖରଙ୍କର ପାଣ୍ଡିତ୍ୟରେ ଈର୍ଷାନ୍ୱିତ ହୋଇ ମାନ୍ଦ୍ରାଜର କେତେଜଣ ଜ୍ୟୋତିଷୀ ତାଙ୍କୁ ପରୀକ୍ଷା କରିବାକୁ ଆରମ୍ଭ କଲେ । ଥରକର ଏକ ଚନ୍ଦ୍ରଗ୍ରହଣ ସମୟରେ ବାଦାନୁବାଦ ଆରମ୍ଭ ହେଲା । ଚନ୍ଦ୍ରଶେଖର ଯେଉଁ ସମୟରେ ଚନ୍ଦ୍ରଗ୍ରହଣ ହେବ ବୋଲି ନିର୍ଦ୍ଦିଷ୍ଟ କରି ଜଣାଇଲେ ତାହାକୁ ମାନ୍ଦ୍ରାଜର ଜ୍ୟୋତିଷୀମାନେ ଗ୍ରହଣ କଲେ ନାହିଁ । ମାତ୍ର ମଞ୍ଜୁଷା ରାଜା ଖବର ନେବାରେ ଜଣାଗଲା ଯେ ସାମନ୍ତ ଚନ୍ଦ୍ରଶେଖରଙ୍କ ଗଣନା ଅନୁମାନେ ଠିକ୍ ସମୟରେ କଳିକତାରେ ସେହି ଚନ୍ଦ୍ର ଗ୍ରହଣ ହୋଇଛି । ଫଳରେ ବିଦେଶରେ ମଧ୍ୟ ତାଙ୍କର ଯଶ ପ୍ରସାରିତ ହେଲା । ମଞ୍ଜୁଷା ରାଜା ସାମନ୍ତଙ୍କ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ତାଙ୍କୁ ମାସିକ ତିରିଶ ଟଙ୍କା ବୃତ୍ତି ବାନ୍ଧି ଦେଲେ ।

ପାଶ୍ଚାତ୍ୟ ଶିକ୍ଷାରେ ଉଚ୍ଚ ଶିକ୍ଷିତ ବ୍ୟକ୍ତି ଭାବରେ ରାୟବାହାଦୁର ରାଧାନାଥ ରାୟଙ୍କ ସହିତ ଚନ୍ଦ୍ରଶେଖରଙ୍କର ଆଳାପ ଓ ପରିଚୟ ସର୍ବ-ପ୍ରଥମ ହୁଏ । କଟକର ରାଧାନାଥ ଶିକ୍ଷା ବିଭାଗର ଇନ୍‌ସପେକ୍ଟର ଥିବାରୁ ତାଙ୍କୁ ପ୍ରାୟ ଦେଶୀୟ ଗଡଜାତରେ ଥିବା ବିଦ୍ୟାଳୟଗୁଡ଼ିକ ପରିଦର୍ଶନ କରିବାକୁ ପଡୁଥିଲା । ରାଧାନାଥ ଯେଉଁ ସ୍ଥାନକୁ ଯେତେବେଳେ ଯାଉଥିଲେ, ସେଠାରେ ଥିବା ଗୁଣୀ ଓ ପଣ୍ଡିତମାନଙ୍କ ସହିତ ମିଶି ଆଳାପ ଆଲୋଚନା କରିବାକୁ ଭଲ ପାଉଥିଲେ । ରାଧାନାଥ ତାଙ୍କର ଖଣ୍ଡପଡ଼ା ଗସ୍ତ ସମୟରେ ସାମନ୍ତଙ୍କ ସହ ସାକ୍ଷାତ୍ କଲେ । କେବଳ ସଂସ୍କୃତ ସାହିତ୍ୟ କ'ଣ, ଓଡ଼ିଆ ସାହିତ୍ୟରେ ତାଙ୍କର ଅସାଧାରଣ ବ୍ୟୁତ୍ପତ୍ତି ଦେଖି ସେ ସ୍ତମ୍ଭୀଭୂତ ହୋଇ-ଯାଇଥିଲେ । ବୈଦେହୀଶ ବିଳାସ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର, ବିଦଗ୍ଧ ଚିନ୍ତାମଣି ଓ କିଶୋର ଚନ୍ଦ୍ରାନନ ଚମ୍ପୂ ପ୍ରଭୃତି ସେ କେବଳ ଅଧ୍ୟୟନ କରି ନ ଥିଲେ ବରଂ ଅଧିକାଂଶ କଣ୍ଠସ୍ଥ କରିଥିଲେ । ମଣି କାଞ୍ଚନ ସଂଯୋଗ ହେଲା ଭଳି ରାଧାନାଥଙ୍କ ସହ ଚନ୍ଦ୍ରଶେଖରଙ୍କର ବନ୍ଧୁତ୍ୱ ବୃଦ୍ଧି

ପାଇଲା । ଜ୍ୟୋତିଷ ଶାସ୍ତ୍ରରେ ତାଙ୍କର ବିରାଟ ପ୍ରତିଭା ଶେଷରେ ବଣମଲ୍ଲୀ ଭଳି ବଣରେ ଫୁଟି ମଉଳି ଯିବ ଦେଖି ରାଧାନାଥ ତାଙ୍କର ଉପଯୁକ୍ତ ସମ୍ମାନ କରିବାକୁ ନିଜର ନୈତିକ କର୍ତ୍ତବ୍ୟ ବୋଲି ମନେ କଲେ । "ସିଦ୍ଧାନ୍ତ ଦର୍ପଣ" ବିଷୟରେ ସେ ବଙ୍ଗଳା ଓ ଓଡ଼ିଶାର ଅନେକ ବିଶିଷ୍ଟ ବ୍ୟକ୍ତିଙ୍କ ନିକଟକୁ ପତ୍ର ଲେଖି ଜଣାଇଲେ ।

ରାଧାନାଥ ରାୟଙ୍କ ଚେଷ୍ଟାରୁ ଚନ୍ଦ୍ରଶେଖରଙ୍କର ପ୍ରତିଭା ବିଷୟରେ ମହେଶଚନ୍ଦ୍ର ନ୍ୟାୟରତ୍ନ ଓ ଯୋଗେଶ ଚନ୍ଦ୍ର ରାୟ ଜାଣିପାରିଲେ । "ସେମାନେ ସିଦ୍ଧାନ୍ତ ଦର୍ପଣ" ଭଳି ଅମୂଲ୍ୟ କୃତିର ଉପଯୁକ୍ତ ମୂଲ୍ୟାଙ୍କନ କଲେ ଏବଂ ପରେ ସେହିମାନଙ୍କ ପ୍ରଚେଷ୍ଟାରୁ ଚନ୍ଦ୍ରଶେଖର ଇଂରାଜୀ ସରକାରଙ୍କଠାରୁ "ମହା ମହୋପାଧ୍ୟାୟ" ଉପାଧି ପାଇବାକୁ ଯୋଗ୍ୟ ବିବେଚିତ ହେଲେ । ଅଧ୍ୟାପକ ଯୋଗେଶଚନ୍ଦ୍ର ରାୟଙ୍କ ପ୍ରଗାଢ଼ ଯତ୍ନ ହେତୁ "ସିଦ୍ଧାନ୍ତ ଦର୍ପଣ'ର ମୁଦ୍ରଣ ସମ୍ଭବ ହୋଇପାରିଲା ।

୧୮୯୩ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସ ଅଠାଇଶ ତାରିଖ ଦିନ କଟକ କିଲ୍ଲା ପଡ଼ିଆରେ ଏକ ଦରବାର ହୋଇ ସାମନ୍ତଙ୍କୁ "ମହାମହୋପାଧ୍ୟାୟ" ଉପାଧି ପ୍ରଦାନ କରାଗଲା । ସେହି ଦରବାରକୁ ଲକ୍ଷ୍ୟ କରି ରାଧାନାଥ ଦରବାର କାବ୍ୟ ଲେଖିଛନ୍ତି । ସେହି ଦରବାର କାବ୍ୟରୁ ଗୋଟିଏ ଦୁଇଟି ପଙ୍‌କ୍ତି ଉଦ୍ଧାର କରାଗଲା—

"ସିଦ୍ଧାନ୍ତ ଦର୍ପଣ ହେବ ନାହିଁ ଲୟ
ନର ଦେହେ ଥିବ ଯାବତ ହୃଦୟ"

× × ×

ଉତ୍କଳ ହୃଦୟେ ଅଚଳ ଭାସ୍କର
ହେଲେ ଭାରତର ଦୀପ୍ତିମୟ ଭାସ୍କର"

ଚନ୍ଦ୍ରଶେଖର ପ୍ରକୃତରେ ଭାସ୍କରାଚାର୍ଯ୍ୟଙ୍କ ପରେ ଭାରତରେ ଦ୍ୱିତୀୟ ଭାସ୍କରାଚାର୍ଯ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଗଣିତ ଶାସ୍ତ୍ର ଏବଂ ଫଳିତ ଜ୍ୟୋତିଷରେ ତାଙ୍କର ଅସାଧାରଣ ପ୍ରତିଭା କଥା ଭାବିଲେ ବିସ୍ମିତ ହେବାକୁ ହୁଏ ।

ସତ୍ୟ ଅପ୍ରିୟ ହେଲେ ମଧ୍ୟ ସାମନ୍ତ କହିବାକୁ ଆଦୌ ପଶ୍ଚାତ୍‌ପଦ ହେଉ ନ ଥିଲେ । ଏଥିପାଇଁ ଅନେକ ସମୟରେ ତାଙ୍କୁ ଅସୁବିଧା ଭୋଗ କରିବାକୁ ହେଉଥିଲା ।

ସେ ଜଗନ୍ନାଥଙ୍କର ପରମଭକ୍ତ ଥିଲେ । ଅନ୍ତିମ ଜୀବନ ତାଙ୍କର ପୁରୀରେ ଶେଷ ହେବ ବୋଲି ସେ ଇଚ୍ଛା କରିଥିଲେ ଏବଂ ମୃତ୍ୟୁ କେବେ ହେବ ତାହା ସେ ପୂର୍ବରୁ ସ୍ଥିର କରି ପାରିଥିଲେ । ପୁରୀରେ ଜଗନ୍ନାଥଙ୍କ ନୀତି ଏବଂ ଭୋଗ ଇତ୍ୟାଦି ଠିକ୍ ସମୟରେ ହେବା ପାଇଁ ଏକ ବିଶୁଦ୍ଧ ପଞ୍ଜିକାର ଆବଶ୍ୟକତା ସେ ଅନୁଭବ କରି "ସାମନ୍ତ ପଞ୍ଜିକା" ନାମରେ ଏକ ପଞ୍ଜିକା ପ୍ରସ୍ତୁତ କଲେ ଏବଂ ପରେ ଏହା ତାଙ୍କର ଶିଷ୍ୟ ସଦାଶିବ ଖଡ଼ୀରତ୍ନଙ୍କ ସହଯୋଗରେ ପ୍ରକାଶିତ ହୋଇ ଆଜଯାଏ "ସାମନ୍ତ ପଞ୍ଜିକା" ରୂପେ ଓଡ଼ିଶାରେ ପ୍ରଚଳିତ ହୋଇ ଆସୁଛି ।

ସାମନ୍ତ ଚନ୍ଦ୍ରଶେଖରଙ୍କର ଶେଷ ଜୀବନ ଦାରିଦ୍ର୍ୟ ଓ ଅଶାନ୍ତିରେ କଟିଥିଲା । ସ୍ୱାସ୍ଥ୍ୟ ଆଦୌ ଭଲ ରହୁ ନ ଥିଲା । ତାଙ୍କ ଗଣନା ଅନୁସାରେ ମୃତ୍ୟୁର ଷୋଳ ଦିନ ପୂର୍ବରୁ ସେ ଖଣ୍ଡପଡ଼ା ଗୁଡ଼ ପୁରୀରେ ଦେହ ତ୍ୟାଗ ପାଇଁ ଯାତ୍ରା କରିଥିଲେ । ୧୯୦୪ ମସିହା ଜ୍ୟେଷ୍ଠମାସ କୃଷ୍ଣ ପକ୍ଷ ଦ୍ୱାଦଶୀ ଦିନ ତାଙ୍କର ଦେହାନ୍ତ ହୋଇଥିଲା । ଓଡ଼ିଶା ଆକାଶରୁ ଏକ ଉଜ୍ଜ୍ୱଳ ତାରକା ଯେପରି ତାଙ୍କ ବିୟୋଗରେ ବିଲୟ ଘଟିଲା ।

ତାଙ୍କ ବିୟୋଗରେ ସେତେବେଳର ପ୍ରଖ୍ୟାତ ସାହିତ୍ୟ ପତ୍ରିକା-ଉତ୍କଳ ସାହିତ୍ୟରେ ପ୍ରକାଶିତ ହୋଇଥିବା ଶୋକ ସମ୍ବାଦଟି ଉଦ୍ଧୃତ କଲେ ଯଥେଷ୍ଟ ହେବ :—

# ଶୋକ ସମ୍ବାଦ

## କଟକ ଜୁନ୍ ୧୯୦୪ ମସିହା :-

ଉତ୍କଳ ଗୌରବ କ୍ଷଣଜନ୍ମା ପୁରୁଷ ମହାମହୋପାଧ୍ୟାୟ ଶ୍ରୀ ଚନ୍ଦ୍ରଶେଖର ସିଂହ ସାମନ୍ତ ଆଜ ସଂସାରରେ ନାହାନ୍ତି । ଜରା, ଶୋକ, ଦାରିଦ୍ର୍ୟ, ହିଂସା, ଦ୍ୱେଷ ପ୍ରଭୃତିର ହସ୍ତ ଏଡ଼ାଇ ଅମରାତ୍ମା ଅମରଧାମକୁ ଚାଲି ଯାଇ ଅଛନ୍ତି । ଏ ସଂସାରରେ ଥାଇ ସୁଦ୍ଧା ସେ ଜ୍ଞାନ ଓ ଧର୍ମ ବଳରେ ସଂସାରର ଅଜ୍ଞାତ ପ୍ରଦେଶରେ ବାସ କରୁଥିଲେ । ଦେହର ସମ୍ବନ୍ଧ ରହିତ ହେଲା । ସର୍ବପ୍ରକାର ବନ୍ଧନ ଛିନ୍ନ ହେଲା. ଏବେ ସେ ନିରବଚ୍ଛିନ୍ନ ଜ୍ଞାନ-ପ୍ରେମ-ସୁଧା ପାନର ଅଧିକାରୀ ହେଲେ । ହୀନ ଉତ୍କଳରେ ଜନ୍ମ ଗ୍ରହଣ କରି ଚନ୍ଦ୍ରଶେଖର ସଭ୍ୟ ଜଗତ ନିକଟରେ ଏହାର ମୁଖ ଉଜ୍ଜ୍ୱଳ କଲେ । ଏ ପତିତ ଜନ୍ମଭୂମିକୁ କିଞ୍ଚିତ ଉର୍ଦ୍ଧ୍ୱକୁ ଉଠାଇ ଆଣିଲେ । ମାତ୍ର ଉତ୍କଳବାସୀ ତାଙ୍କ ପ୍ରତି କି ବ୍ୟବହାର କରିଅଛନ୍ତି ? ଆଜ ତାଙ୍କର ତିରୋଧାନରେ ଦୁଇ ଚାରିଟା ଶୋକ ପ୍ରକାଶକ ବାକ୍ୟ ଉଚ୍ଚାରଣ କରି, ଦୁଇଚାରି ବିନ୍ଦୁ ଅଶ୍ରୁ ବିସର୍ଜନ କରି ଅନେକେ କର୍ତ୍ତବ୍ୟ ଶେଷ କରି ବସିବେ । ଦୁର୍ଭାଗ୍ୟ, ଦେଶରେ ପ୍ରତିଭାର ପରିଣାମ ଏହି । ବୃଥା ଛଳନା, ଛଦ୍ମବେଶରେ ଆଉ କିଛି ଫଳ ନାହିଁ । ଚନ୍ଦ୍ରଶେଖର ଭିନ୍ନ ଦେଶବାସୀ, ଭିନ୍ନ ଜାତୀୟ ଲୋକ । ଆମେମାନେ ତାଙ୍କର କେହି ନୋହୁଁ । ସୁତରାଂ ଆମମାନଙ୍କ ମୁଖରେ ତାଙ୍କ କଥା ଶୋଭା ପାଇବ ନାହିଁ । ଭାରତବର୍ଷ ସର୍ବାଂଶରେ ଶ୍ରେୟଃ । ତାଙ୍କ ରାଜ୍ୟରେ ଗୃହରେ ସେ ନିତ୍ୟାନନ୍ଦ ସମ୍ଭୋଗ କରନ୍ତୁ । ଆମେମାନେ ଧୂଳିମାଟି ଘେନି ଯେପରି ଅଛୁଁ ସେହିପରି ଥାଉ ।

# ହୋମି ଜାହାଙ୍ଗୀର ଭାବା

## ( ୧୯୦୯-୧୯୬୬ )

ପରମାଣୁ ଶକ୍ତି ଉତ୍ପାଦନରେ ଭାରତବର୍ଷକୁ ଯିଏ ପଥପ୍ରଦର୍ଶନ କରି ବିଶ୍ୱରେ ପରମାଣୁ ଶକ୍ତିଶାଳୀ ରାଷ୍ଟ୍ର ରୂପେ ଭାରତର ଗର୍ବ ଓ ଗୌରବ ବଢ଼ାଇଛନ୍ତି ସେ ହେଉଛନ୍ତି ହୋମି ଜାହାଙ୍ଗୀର ଭାବା । ସାଧାରଣତଃ ପ୍ରତ୍ୟେକ ଭାରତୀୟ ତାଙ୍କୁ ବୈଜ୍ଞାନିକ ଭାବା ରୂପେ ଜାଣନ୍ତି ।

ବମ୍ବେ ନଗରୀରେ ଏକ ଆଭିଜାତ ପାର୍ସି ପରିବାରରେ ଭାବାଙ୍କର ଜନ୍ମ ସନ ୧୯୦୯ ମସିହା ଅକ୍ଟୋବର ତିରିଶି ତାରିଖ ଦିନ ହୋଇଥିଲା । ଅନ୍ୟ ବୈଜ୍ଞାନିକଙ୍କ ଭଳି ପିଲାଦିନରୁ ତାଙ୍କୁ ଦୁଃଖ କଷ୍ଟ ସହିବାକୁ ପଡ଼ି ନ ଥିଲା । ତାଙ୍କର ପିତା ସେତେବେଳେ ଯଥେଷ୍ଟ ବିତ୍ତଶାଳୀ ଥିଲେ । ସେ ତେଣୁ ସାଧାରଣ ପିଲାଙ୍କ ପାଇଁ ଉଦ୍ଦିଷ୍ଟ ସ୍କୁଲରେ ଉକ୍ତର ଭାବାଙ୍କର ବାଲ୍ୟ-ଶିକ୍ଷା ଆରମ୍ଭ କରି ନ ଥିଲେ । ଆଜିକାଲି ଯେପରି କନ୍‌ଭେଣ୍ଟ ଏବଂ ଷ୍ଟୁଆର୍ଟ ପ୍ରଣାଳୀରେ ସାଧାରଣତଃ ସମ୍ଭ୍ରାନ୍ତ ବଂଶୀୟ ପିଲାମାନେ ପାଠ ପଢ଼ନ୍ତି ସେହିପରି ତାଙ୍କର ପିତାଙ୍କୁ ବିଦେଶୀ ଧରଣର ଶିକ୍ଷା ଦେବା ପାଇଁ ଜନ୍ କାନନ୍ ହାଇସ୍କୁଲରେ ନାମ ଲେଖାଇ ଦେଇଥିଲେ । ଭାବା

ତାଙ୍କର ବାଲ୍ୟ ଜୀବନରୁ ବିଚକ୍ଷଣ ଏବଂ ବୁଦ୍ଧିମାନ୍ ଥିଲେ । ତାଙ୍କ ପିତା ମଧ୍ୟ ତାଙ୍କର ପାଠପଢ଼ା ପ୍ରତି ଯଥେଷ୍ଟ ଦୃଷ୍ଟି ଦେଇଥିଲେ । ଫଳରେ କୃତିତ୍ୱର ସହ ଜନ୍ କାନନ ସ୍କୁଲରୁ ଶିକ୍ଷା ସମାପ୍ତି ପରେ ସେ ବମ୍ବେ-ସ୍ଥିତ ଇନ୍‌ଷ୍ଟିଚ୍ୟୁଟ୍ ଅଫ ସାଇନ୍‌ସ କଲେଜରେ ପ୍ରବେଶ କରିପାରିଥିଲେ ।

ଭାବାଙ୍କର ପିତା ଭାରତର ବିଶିଷ୍ଟ ଶିଳ୍ପପତି ଟାଟାଙ୍କର ସମ୍ପର୍କୀୟ । ତେଣୁ ପଇସାର ଅଭାବ ଆଦୌ ନ ଥିଲା । ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସାଇନ୍‌ସ କଲେଜରୁ ଶିକ୍ଷା ଶେଷ କରିବା ମାତ୍ରେ ଭାବା ବିଲାତର କେମ୍ବ୍ରିଜ ସ୍କୁଲରେ ପାଠ ପଢ଼ିବା ପାଇଁ ବିଦେଶଯାତ୍ରା କଲେ । କେମ୍ବ୍ରିଜ ବିଶ୍ୱ-ବିଦ୍ୟାଳୟରେ ତାଙ୍କର ତୀକ୍ଷ୍ଣ ବୁଦ୍ଧି ଓ ଅନନ୍ୟସାଧାରଣ ପ୍ରତିଭା ପାଇଁ "ରାଉନ୍ ବଲ୍‌ଟ୍ରାଭେଲିଂ ସ୍କଲାରସିପ୍" ବୃତ୍ତି ଲାଭ କରି ପାରିଥିଲେ । ଏହି ବୃତ୍ତିର ଏତିକି ବିଶେଷତ୍ୱ, ଯେଉଁ ଛାତ୍ର ଏହି ବୃତ୍ତିର ଅଧିକାରୀ ହେବ ସେ ପୃଥିବୀର ଯେଉଁ ବୈଜ୍ଞାନିକଙ୍କ ଅଧୀନରେ ଗବେଷଣା କରିବାକୁ ଇଚ୍ଛିବ ତାହା କରିପାରିବ । ଭାବା ଏହି ବୃତ୍ତି ପାଇଁ ଜର୍ମାନ୍ ଯାତ୍ରା କଲେ । ସେଠାରେ ପୃଥିବୀ ବିଖ୍ୟାତ ବୈଜ୍ଞାନିକ ଉଲଫ୍ ଗ୍ୟାଙ୍ଗ୍ ପାଉଲିଙ୍କ ଅଧୀନରେ ପରମାଣୁ ତଥ୍ୟ ଉପରେ ଗବେଷଣା ଆରମ୍ଭ କଲେ । ୧୯୩୨ ମସିହାଠାରୁ ୧୯୩୪ ମସିହା ପର୍ଯ୍ୟନ୍ତ ଦୁଇ ବର୍ଷ ସେ ଜର୍ମାନୀରେ ରହି ଗବେଷଣା ଶେଷ କରି ସେ ଇଟାଲୀ ଯାତ୍ରା କଲେ । ସେଠାରେ ଦୀର୍ଘ ନଅ ବର୍ଷ ଧରି ନୋବେଲ ପୁରସ୍କାର ବିଜେତା ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ ଏନ୍‌ରିକୋ ଫର୍ମିଙ୍କ ଅଧୀନରେ ଗବେଷଣା ଚଳାଇଥିଲେ । ଏହାପରେ ସେ ଇଂଲଣ୍ଡ ପୁଣି ଫେରି ଆସିଲେ । ପୂର୍ବପରି ପୁଣି ବୈଜ୍ଞାନିକ ଗବେଷଣା କାର୍ଯ୍ୟରେ ରତ ରହିଲେ । ନିରଳସ ଅଧ୍ୟବସାୟ ଓ ସାଧନା ଏଥର ପୁଣି ତାଙ୍କ ଗଳାରେ କୃତିତ୍ୱର ଜୟମାଳ୍ୟ ପିନ୍ଧାଇ ଦେଲା । ସେ ଆଉ ଏକ ଛାତ୍ର ବୃତ୍ତି ଲାଭ କଲେ । ଏହାର ନାମ "ସିନିଅର ଷ୍ଟୁଡେଣ୍ଟସିପ୍ ଅଫ୍ ଦି

ଏକ୍ଜିବିସନ୍ ଅଫ୍ ୧୮୫୧" । ଆର୍ଥିକ ସମ୍ବନ୍ଧରେ ଅଭାବକୁ ଏହି ଛାତ୍ରବୃତ୍ତି ତାଙ୍କୁ ସେ ସାହାଯ୍ୟ କରୁଥିଲା କହିଲେ ଭୁଲ ହେବ ବରଂ ଏ ଭଳି ବୃତ୍ତି ତାଙ୍କର ସାଧନାକୁ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଭବିଷ୍ୟତକୁ ଆଗେଇ ଯିବା ପାଇଁ ଯଥେଷ୍ଟ ପ୍ରେରଣା ଯୋଗାଇଦେଲା ।

ଛାତ୍ରାବସ୍ଥାରେ ସେ ବିଶିଷ୍ଟ ପଦାର୍ଥ ବିଜ୍ଞାନୀ ଡିରାକ୍‌ଙ୍କ ଗବେଷଣା ପ୍ରତି ସେ ଆକୃଷ୍ଟ ହୋଇଥିଲେ । ପରମାଣୁ ବିଜ୍ଞାନର ଜନ୍ମିତ ଓ କମ-ବିକାଶ ଉପରେ ତାଙ୍କର ଗବେଷଣାକୁ ବୁଝିବା ଯଦିଓ କଷ୍ଟକର ହେଉଥିଲା; କିନ୍ତୁ ବଡ଼ ଚମତ୍କାରପ୍ରଦ ମନେ ହେଉଥିଲା ।

୧୯୪୦ ମସିହାରେ ଭାବା ବିଦେଶରେ ତାଙ୍କର ଗବେଷଣା ଓ ଅଧ୍ୟୟନ ଶେଷ କରି ଭାରତ ଫେରି ଆସିଲେ । ବାଙ୍ଗାଲୋରସ୍ଥିତ ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସାଇନ୍‌ସ ପ୍ରତିଷ୍ଠାନରେ ପ୍ରାଧ୍ୟାପକ ରୂପେ ଯୋଗ ଦେଲେ ।

୧୯୦୫ ଖ୍ରୀଷ୍ଟାବ୍ଦରେ ମାର୍କସ୍ ପ୍ଲାଙ୍କଙ୍କଦ୍ୱାରା କ୍ୱାଣ୍ଟମ୍ ତତ୍ତ୍ୱ ଉଦ୍ଭାବିତ ହେଲା । କ୍ୱାଣ୍ଟମ୍ ତତ୍ତ୍ୱକୁ ଆଶ୍ରୟ କରି ପରବର୍ତ୍ତୀ ସମୟରେ ପରମାଣୁ ତଥ୍ୟ ଉପରେ ବୈଜ୍ଞାନିକମାନେ ଗବେଷଣା କରିବାକୁ ଯଥେଷ୍ଟ ସୁବିଧା ପାଇଲେ । ଭାବା ଜଟିଳ କ୍ୱାଣ୍ଟମ ତତ୍ତ୍ୱ ଉପରେ ମନୋନିବେଶ କରି ଏକ ତତ୍ତ୍ୱ ଉଦ୍ଭାବିତ କଲେ ଏବଂ ଏହାକୁ ସରଳ ଭାବରେ ବୁଝାଇ ଦେବା ପାଇଁ ପ୍ରସିଦ୍ଧ ବୈଜ୍ଞାନିକ ହାଇଟ୍‌ଲର୍‌ଙ୍କ ସହଯୋଗ କାମନା କରିଥିଲେ । ହାଇଟ୍‌ଲର୍ ଓ ଭାବାଙ୍କ ଦ୍ୱାରା ଉଦ୍ଭାବିତ ଏହି ତତ୍ତ୍ୱଟି ଆଜି ବିଜ୍ଞାନ-ଜଗତରେ "ଭାବା-ହାଇଟ୍‌ଲର୍ ସାଓ୍ୱାର ତତ୍ତ୍ୱ" ନାମରେ ସୁପରିଚିତ ।

ପଦାର୍ଥ ବିଜ୍ଞାନର ପ୍ରାଧ୍ୟାପକ ରୂପେ ମାତ୍ର ଦୁଇଟି ବର୍ଷ କାର୍ଯ୍ୟ କରିବା ପରେ ନିଜର କାର୍ଯ୍ୟକୁଶଳତା ଓ ଜ୍ଞାନ ହେତୁ ସେ ମୁଖ୍ୟ ଅଧ୍ୟାପକ ପଦବୀକୁ ଉନ୍ନୀତ ହେଲେ । ତାଙ୍କର ଅଧ୍ୟାପନା ଓ ସରଳ ବ୍ୟବହାର

ପାଇଁ ଛାତ୍ର ମହଲରେ ସେ ଅତ୍ୟନ୍ତ ପ୍ରିୟ ଓ ଶ୍ରଦ୍ଧାର ପାତ୍ର ହୋଇଉଠିଲେ । ଭାବା ଏହି ଅନୁଷ୍ଠାନରେ ବେଶୀ ଦିନ ରହିପାରିଲେ ନାହିଁ । ସେ ଦେଖିଲେ ତାଙ୍କର ସୁଦୂର ଭବିଷ୍ୟତ ଅଛି । ଏହିଭଳି ଗୋଟିଏ କ୍ଷୁଦ୍ର ପରିସର ଭିତରେ ପଡ଼ିରହିଲେ ସେ କେବଳ ଜଣେ ଅଧ୍ୟାପକ ହୋଇ ରହିଯିବେ ସିନା; କିନ୍ତୁ ଗବେଷଣା କରି ଜଣେ ବୈଜ୍ଞାନିକ ହୋଇପାରିବେ ନାହିଁ । ବିଜ୍ଞାନ କ୍ଷେତ୍ରରେ ନୂତନ ନୂତନ ଉଦ୍ଭାବନ ଓ ଅନ୍ୱେଷଣରେ ଥିବା ତାଙ୍କର ଅନୁସନ୍ଧିତ୍ସୁ ମନ ସେଥିପାଇଁ ମାତ୍ର ତିନି ବର୍ଷ ମୁଖ୍ୟ ଅଧ୍ୟାପକ ରୂପେ କାର୍ଯ୍ୟ କଲାପରେ ୧୯୪୫ ମସିହାରେ ସେହି ଅନୁଷ୍ଠାନରୁ ବିଦାୟ ନେଇ "ଟାଟା ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଫଣ୍ଡାମେଣ୍ଟାଲ ରିସର୍ଚ୍ଚ"ର ଡାଇରେକ୍ଟର ରୂପେ ଦାୟିତ୍ୱ ଗ୍ରହଣ କଲେ । ବମ୍ବେ ଆସିଲା ପରେ ମଧ୍ୟ ବାଙ୍ଗାଲୋରଠାରେ ତାଙ୍କ ଅଧୀନରେ ଗବେଷଣା ଆରମ୍ଭ କରିଥିବା ଛାତ୍ରମାନଙ୍କ ସହ ସେ ସମ୍ପର୍କ ରଖିଥିଲେ ଏବଂ ସେମାନଙ୍କ ଗବେଷଣା ପାଇଁ ଉପଯୁକ୍ତ ଦିଗ୍‌ଦର୍ଶନ ମଧ୍ୟ ଦେବାକୁ କୁଣ୍ଠାବୋଧ କରୁ ନ ଥିଲେ ।

ଭାବା ସମଗ୍ର ଦେଶର ଉନ୍ନତିକଳ୍ପେ ଏହି ଅନୁଷ୍ଠାନଟିକୁ ପ୍ରାଣପାତ କରି ଗଢ଼ିବାକୁ ଲାଗିପଡ଼ିଲେ । ସେ ଦୀର୍ଘ କୋଡ଼ିଏ ବର୍ଷ ଟାଟା ଇନ୍‌ଷ୍ଟି-ଚ୍ୟୁଟ୍ ଅଫ୍ ଫଣ୍ଡାମେଣ୍ଟାଲ ରିସର୍ଚ୍ଚରେ କାର୍ଯ୍ୟ କରି ଏହାକୁ ଦେଶ ଆଗରେ ଏକ ମହତ୍ତ୍ୱ ଗବେଷଣା କେନ୍ଦ୍ରରେ ପରିଣତ କଲେ । ତାଙ୍କରି ନିର୍ଦ୍ଦେଶ ମୁତାବକ୍ ପରମାଣୁ ଶକ୍ତି ଉତ୍ପାଦନ, ନେଭରଶ୍ମି ଉପରେ ଗବେଷଣା, ଇଲେକ୍‌ଟ୍ରୋନିକ୍ ଯନ୍ତ୍ରପାତି ନିର୍ମାଣ କୌଶଳ, କୃଷି ଓ ଚିକିତ୍ସା ବିଜ୍ଞାନର ଉନ୍ନତି ପାଇଁ ଆବଶ୍ୟକୀୟ ଯନ୍ତ୍ରପାତି ଉତ୍ପାଦନ କରିବା ଏହି ଅନୁଷ୍ଠାନର ଲକ୍ଷ୍ୟ ରହିଲା । କ'ଣ କଲେ ଦେଶରେ ଥିବା କଞ୍ଚାମାଲଗୁଡ଼ିକର କପରି ଉପଯୁକ୍ତ ବିନିଯୋଗ ହୋଇପାରି ଦେଶର ଶିଳ୍ପପ୍ରସାରରେ ସମୃଦ୍ଧି ଘଟାଇ ପାରିବ, ତାହା ମଧ୍ୟ ଏହି ଗବେଷଣା କେନ୍ଦ୍ରରେ ପରୀକ୍ଷିତ ହେବାକୁ

ଲାଗିଲା । ଦେଶ ବିଦେଶରୁ ଛାତ୍ରମାନେ ଆସି ଏହିଠାରେ ଗବେଷଣା ଆରମ୍ଭ କଲେ । ନିଜର ପୂର୍ବଠାରୁ ଅଧିକ ସ୍ନେହ ସେ ଏହି ଅନୁଷ୍ଠାନଟିକୁ କରୁଥିଲେ । ତାଙ୍କର ନିଷ୍ଠା ଏବଂ ସତତା ପାଇଁ ଏହି ଅନୁଷ୍ଠାନର ଯଶ କେବଳ ଭାରତ କାହିଁକି ବିଦେଶ ରାଜ୍ୟରେ ମଧ୍ୟ ପ୍ରସାରିତ ହେବାକୁ ଲାଗିଲା ।

ପଣ୍ଡିତ ଜବାହାରଲାଲ ନେହେରୁ ଭାବାଙ୍କର ଗବେଷଣା ଦେଖି ଏତେ ମୁଗ୍ଧ ଏବଂ ପ୍ରୀତ ହୋଇଯାଇଥିଲେ ଭାରତକୁ ପରମାଣୁ କ୍ଷେତ୍ରରେ ସ୍ୱାବଲମ୍ବୀ କରିବା ପାଇଁ ଭାବାଙ୍କ ଚେୟାରମ୍ୟାନ୍‌ସିପ୍‌ରେ ଏକ 'ଆଟମିକ ଏନର୍ଜି କମିଶନ'' ଗଠନ କଲେ । ବର୍ତ୍ତମାନ ଏହି ପରମାଣୁ ଶକ୍ତି କମିଶନ ଏହି ଅନୁଷ୍ଠାନର ସମସ୍ତ ଦାୟିତ୍ୱ ଗ୍ରହଣ କରିଛନ୍ତି । ପରମାଣୁ ଶକ୍ତି କମିଶନର ଭାବା କେବଳ ଚେୟାରମ୍ୟାନ୍ ହେଲେ ନାହିଁ, ପଣ୍ଡିତ ନେହେରୁ ତାଙ୍କ ହାତରେ ସମସ୍ତ କ୍ଷମତା ପ୍ରଦାନ କରି ନିଜ ହାତରେ ଏହି ବିଭାଗକୁ ରଖିଲେ । ଶାନ୍ତି ଉଦ୍ଦେଶ୍ୟରେ କେବଳ ପରମାଣୁ ଶକ୍ତିର ବିନିଯୋଗ ହୋଇପାରିବ ସେଥିପାଇଁ ଲୋକସଭାରେ ଯେଉଁ ଆଟମିକ ଏନର୍ଜି ଆକ୍ଟ, ୧୯୪୮ ମସିହାରେ ପାଶ୍ ହେଲା ସେଥିପାଇଁ ଭାବାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ହିଁ ଅନେକାଂଶରେ ଦାୟୀ ।

ବମ୍ବେ ନଗରୀ ନିକଟରେ ଟ୍ରମ୍ବେଠାରେ ଭାବାଙ୍କ ଉଦ୍ୟମରେ ପରମାଣୁ ଶକ୍ତି ଉତ୍ପାଦନ କେନ୍ଦ୍ର ସ୍ଥାପିତହେଲା । ପରମାଣୁ ଶକ୍ତି ଉପରେ ଗବେଷଣା ଚଳାଇ ମାତ୍ର ଏତେ ଅଳ୍ପ ସମୟ ଭିତରେ ପରମାଣୁ ଶକ୍ତି ଉତ୍ପାଦନ କରିଥିବା ଦେଶମାନଙ୍କ ଭିତରେ ଭାରତ ପ୍ରଥମ ହେଲା । ଭାବାଙ୍କର ଏକନିଷ୍ଠ ସାଧନା ଏବଂ ସ୍ୱଦେଶପ୍ରୀତି ପାଇଁ ଏହା ସମ୍ଭବ ହୋଇପାରିଲା ।

ଅସାଧାରଣ ପ୍ରତିଭାସମ୍ପନ୍ନ ଏହି ବୈଜ୍ଞାନିକଙ୍କର କୃତିତ୍ୱକୁ ଯେତେବେଳେ ସମଗ୍ର ପୃଥିବୀ ସ୍ୱୀକାର କଲା ସେତେବେଳେ ପ୍ରଶଂସା ଓ ସ୍ୱୀକୃତିର ସୁଅ ତାଙ୍କ ପଛରେ ଛୁଟିବାକୁ ଲାଗିଲା । ୧୯୪୧ ମସିହାରେ ସେ ରୟାଲ ସୋସାଇଟିର ସଭ୍ୟ ରୂପେ ମନୋନୀତ ହେଲେ । ସେ ପାଠ ପଢ଼ିଥିବା କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ତରଫରୁ ତାଙ୍କୁ ୧୯୫୩ ମସିହାରେ ଆଡାମସ୍ ପୁରସ୍କାର ପ୍ରଦାନ କରାଗଲା । ଯୁକ୍ତରାଷ୍ଟ୍ର ଆମେରିକା ସରକାର ତାଙ୍କୁ ନ୍ୟାସନାଲ ଏକାଡେମୀ ଅଫ୍ ସାଇନ୍‌ସର ସଭ୍ୟ ରୂପେ ଗ୍ରହଣ କରିନେଲେ । ପୁଣି କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ତରଫରୁ ସର୍ବୋଚ୍ଚ ସମ୍ମାନ ହପ୍‌କିନ୍‌ସ ପୁରସ୍କାର ତାଙ୍କୁ ପ୍ରଦାନ କରାଗଲା । ୧୯୬୦ ମସିହାରେ ଇଣ୍ଟର ନ୍ୟାସନାଲ ୟୁନିୟନ ଅଫ୍ ପିଓର ଆଣ୍ଡ ଆପ୍ଲାଏଡ଼ ଫିଜିକ୍‌ସ ଅନୁଷ୍ଠାନରେ ସଭାପତି ରୂପେ ନିର୍ବାଚିତ ହେଲେ । ଭାବାଙ୍କର ଅସୀମ ଧୀଶକ୍ତି ଏବଂ ଅଲୌକିକ ଗବେଷଣା କାର୍ଯ୍ୟ ପାଇଁ କାନାଡା ସରକାର ତାଙ୍କ ରାଜ୍ୟର "ରୟାଲ ଏକାଡେମୀ ଅଫ୍ ସାଇନ୍‌ସ"ର ପରାମର୍ଶଦାତା ରୂପେ ତାହାଙ୍କୁ ନିଯୁକ୍ତ ଦେଲେ ।

ଦେଶ ବିଦେଶରୁ ଏହିଭଳି ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଏବଂ ସମ୍ମାନ ପାଉଥିଲେ ମଧ୍ୟ ଭାବା ଆଦୌ ଗର୍ବରେ ଉତ୍ଫୁଲିତ ହୋଇ ନ ଥିଲେ । ସେ ଅବିଚଳିତ ଭାବରେ ନିଜର କର୍ତ୍ତବ୍ୟ ସମ୍ପାଦନ କରିଯାଉଥିଲେ ।

୧୯୫୧ ମସିହାରେ ତାଙ୍କୁ ଇଣ୍ଡିଆନ୍ ସାଇନ୍‌ସ କଂଗ୍ରେସର ସଭାପତି ରୂପେ ଏବଂ ୧୯୬୩ ମସିହାରେ ନ୍ୟାସନାଲ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସାଇନ୍‌ସର ସଭାପତି ରୂପେ ନିର୍ବାଚିତ କରାଗଲା । କେନ୍ଦ୍ର ସରକାର ସେ ବୈଜ୍ଞାନିକ ଗବେଷଣାର ପରାମର୍ଶଦାତା ଥିଲେ । ୧୯୫୪ ମସିହାରେ ଭାରତ ସରକାରଙ୍କ ତରଫରୁ ତାଙ୍କୁ ପଦ୍ମଭୂଷଣ ଉପାଧିରେ ମଣ୍ଡିତ କରାଯାଇଥିଲା ।

ଆନ୍ତର୍ଜାତିକ କ୍ଷେତ୍ରରେ ଭାରତର ସୁନାମ ବିଜ୍ଞାନ-ଜଗତରେ ତାଙ୍କ ଲାଗି ପର୍ଯ୍ୟାପ୍ତ ବୃଦ୍ଧି ପାଇଥିଲା । ମିଳିତ ଜାତିସଂଘ ଆନୁକୂଲ୍ୟରେ ୧୯୫୫ ମସିହାରେ "ଶାନ୍ତି ପାଇଁ ପରମାଣୁ ଶକ୍ତିର ଉପଯୋଗ" ଏହି ଉଦ୍ଦେଶ୍ୟରେ ଏକ ସମ୍ମିଳନୀ ଆହୂତ ହୋଇଥିଲା । ଭାବା ହେଉଛନ୍ତି ପ୍ରଥମ ଭାରତୀୟ ବୈଜ୍ଞାନିକ ଯିଏ କି ଏହି ଆନ୍ତର୍ଜାତିକ ବିଶ୍ୱ ସମ୍ମିଳନୀରେ ସଭାପତିତ୍ୱ କରିଥିଲେ । ରାଜନୀତି କ୍ଷେତ୍ରରେ ପଣ୍ଡିତ ନେହେରୁ ଏବଂ ବିଜ୍ଞାନ କ୍ଷେତ୍ରରେ ଡକ୍ଟର ଭାବା ଭାରତର ସମ୍ମାନ ଏକାଧାରରେ ପୃଥିବୀ ସମ୍ମୁଖରେ ଶୀର୍ଷ ସ୍ଥାନରେ ରଖି ପାରିଥିଲେ ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଭାବା ଚିରକୁମାର ଥିଲେ । ତେଣୁ ସାଂସାରିକ ମୋହ ମାୟା ତାଙ୍କୁ ବିଚଳିତ କରି ପାରି ନ ଥିଲା । ସେ ଭାରତକୁ ମାଆ ଭଳି ଭକ୍ତି କରୁଥିଲେ ଏବଂ ବିଜ୍ଞାନକୁ ନିଜର ପୁଅ ଭଳି ସ୍ନେହ କରୁଥିଲେ । ଦେଶ ଏବଂ ବିଜ୍ଞାନ ତାଙ୍କର ପରିବାର ଥିଲା କହିଲେ ଚଳେ । ପରମାଣୁ ଶକ୍ତିର ଉନ୍ନତି ଏବଂ ସଦୁପଯୋଗ ପାଇଁ ସଦାସର୍ବଦା ସେ ଚିନ୍ତିତ ଥିଲେ ।

୧୯୬୬ ମସିହା ଜାନୁଆରୀ ଚବିଶ ତାରିଖ ଦିନ ଆନ୍ତର୍ଜାତୀୟ ପରମାଣୁ ସଂସ୍ଥାର ପରାମର୍ଶଦାତାରୂପେ ଭିଏନାଠାରେ ଅନୁଷ୍ଠିତ ହେଉଥିବା ଏକ ସମ୍ମିଳନୀରେ ଯୋଗ ଦେବାକୁ ଯାଉଥିବାବେଳେ ଏକ ଶୋଚନୀୟ ବିମାନ ଦୁର୍ଘଟଣାରେ ଭାରତର କରପୁତ୍ର ବରିଷ୍ଠ ବୈଜ୍ଞାନିକ ହୋମୀ ଜାହାଙ୍ଗୀର ଭାବାଙ୍କର ଅକାଳ ମୃତ୍ୟୁ ହେଲା ।

ହୋମୀ ଜାହାଙ୍ଗୀର ଭାବାଙ୍କର ଅକାଳ ମୃତ୍ୟୁ ହୋଇ ବିଜ୍ଞାନର ଅଗ୍ରଗତି କ୍ଷେତ୍ରରେ ଭାରତ ଯେଉଁ ପ୍ରବୀଣ ସାଧକଙ୍କୁ ହରାଇ ବସିଲା, ତାହାଙ୍କର ଅଭାବ ଆଜି ପୂରଣ ହୋଇ ପାରିବ କି ନାହିଁ ସନ୍ଦେହ ।